ବଣଜଙ୍ଗଲର ଜୀବଜନ୍ତୁ – ଦୁଇ

# ବାଘ

ଶ୍ରୀ ଉଦୟନାଥ ଷଡ଼ଙ୍ଗୀ



ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର



—୧—

ଆମ ଦେଶରେ ଦୁଇଟି ସବୁଦିନିଆ ସାଧାରଣ ମାମୁ ଅଛନ୍ତି । ସେ ସମସ୍ତଙ୍କର ମାମୁ । ଆମ ବାପା, ଅଜା, ପଣଅଜାଙ୍କର ମାମୁ ଥିଲେ । ଆମେ ମଧ୍ୟ ତାଙ୍କୁ ମାମୁ ବୋଲି ଡାକୁ । ଆମ ପୁଅ, ନାତି, ଅଣନାତି ହେଲେ, ସେମାନେ ବି ମାମୁ ବୋଲି ଡାକିବେ ।

ସେ ଦୁଇଟି ଭିତରୁ ଗୋଟିଏ 'ଜହ୍ନମାମୁ', ଆରଟି 'ବାଘମାମୁ' । ଜହ୍ନ ଆମ ପୃଥିବୀମାଆର ସାନ ଭାଇ; ତେଣୁ ସେ ଆମ ସମସ୍ତଙ୍କର ମାମୁଁ । କିନ୍ତୁ ବାଘ ଯେ କାହିଁକି ମାମୁ, ତା କେହି କହିପାରିବେ ନାହିଁ ।

ବାଘ ନାଁ ପଡ଼ିଲେ ସମସ୍ତେ ଥରହରି ହୋଇଯାଆନ୍ତି । ବାଘ ରୂପ ଦେଖିଲେ ଭୟରେ ଆଖି ବୁଜି ହୋଇଯାଏ । ଏପରି ଅବସ୍ଥାରେ ବି ତାକୁ ମାମୁଁ କହନ୍ତି ।

ଥରେ କେଉଁ ଯୁଗରେ କେଜାଣି ବଣଭିତରକୁ ଦଳେ ଶିକାରୀ ଯାଇଥିଲେ । ସେମାନେ ବାଘଭାଲୁ ଖୋଜୁଖୋଜୁ ଗୋଟିଏ ଅଦ୍ଭୁତ ଜନ୍ତୁ ଦେଖିଲେ । ଜନ୍ତୁର ଚେହେରା ଠିକ୍ ମଣିଷ ପରି; କିନ୍ତୁ ସେ ଆଣ୍ଠୁ ମାଡ଼ି ଚାଲୁଛି, ବାଘ ପରି ହୁଁ ହୁଁ ଗର୍ଜନ କରୁଛି । ମୁହଁ ମାଡ଼ି ଚକ୍ଷୁ ଖାଇବା ଜନସ ପାଟିରେ ନେଇ ପୂରାଉଅଛି ।

ସେ ଜନ୍ତୁଟି ଏ ଶିକାରୀଙ୍କୁ ଦେଖି ଆଖିପିଛୁଳାକେ ବଣଭିତରେ ଲୁଚିଗଲା । ଅଦ୍ଭୁତ ଜନ୍ତୁ ଦେଖି ଏମାନେ ତାକୁ ଧରିବା ପାଇଁ ଧାଇଁଲେ । ବଣର ଚାରିଆଡ଼ ଘେରିଗଲେ । ବହୁତ ଖୋଜାଖୋଜି କଲେ । ମାତ୍ର ସେ ଜନ୍ତୁଟା ଯେ କେଉଁଠି ଲୁଚିଗଲା; ତାର ପତ୍ତା ମିଳିଲା ନାହିଁ ।

ତଥାପି ଶିକାରୀମାନେ ଛାଡ଼ିଲେ ନାହିଁ । ବଣ ଚାରିପାଖରେ ନିଆଁ ଲଗାଇଦେଲେ । ନିଆଁ ହୁ ହୁ ଜଳି ଉଠିଲା । ଶେଷକୁ ଗର୍ଜନ କରି ସେ ଜନ୍ତୁଟା ପଦାକୁ ଡେଇଁପଡ଼ିଲା । ଲୋକମାନେ ତାକୁ ମାଡ଼ିବସି ଧରିଲେ । ଏମାନଙ୍କ ହାତରୁ ମୁକୁଳିବା ଲାଗି ସେ ବହୁତ ଚେଷ୍ଟା କଲା । ଯାହାକୁ ପାଇଲା, ତାକୁ ପାଟିରେ କାମୁଡ଼ି ପକାଇଲା । କିନ୍ତୁ ମୁକୁଳି ଯାଇପାରିଲା ନାହିଁ । ସମସ୍ତେ ମିଶି ତାକୁ ବାନ୍ଧି ପକାଇଲେ; ଗାଆଁକୁ ଆଣିଲେ ।

ପ୍ରକୃତରେ ସେ ଜନ୍ତୁ ନୁହେଁ—ମଣିଷଟିଏ । ବାର ତେର ବର୍ଷ ତଳେ ସେ ଗାଁର ଜଣେ ଲୋକଙ୍କର ଗୋଟିଏ ଛୋଟ ପିଲା ହଠାତ୍ ହରଣଚାଳ ହୋଇ ଯାଇଥିଲା; ଏ ସେହି ପିଲା । ତାହାର ବାପ ମା ତାକୁ ଚିହ୍ନିଲେ ।

ପିଲାଟିକୁ ଘରେ ବାନ୍ଧି ରଖି ଭାତଡାଲି ଖାଇବାକୁ ଦେଲେ । କଥା କହିବାକୁ ଶିଖାଇଲେ । ଠିଆ କରାଇ ଗୋଡ଼ରେ ଚଲାଇଲେ । ପ୍ରଥମେ ପ୍ରଥମେ ଏ ସବୁ ତାକୁ ଅଡ଼ୁଆ ଲାଗୁଥିଲା । ପରେ ବହୁତ କଷ୍ଟରେ କହୁ କହୁ ସେ ହାସଲ କଲା । ଦୋହଲି ଦୋହଲି ଦୁଇ ଗୋଡ଼ରେ ଚାଲିଲା; ଖନେଇ ଖନେଇ କଥା କହିଲା; କିନ୍ତୁ ଘରେ ରହିବାକୁ ଜମା ରାଜି ହେଲା ନାହିଁ । ଟିକିଏ ସୁବିଧା ପାଇଲେ ବଣକୁ ପଳାଇଯିବାକୁ ଚେଷ୍ଟା କଲା । କେତେଥର ବି ପଳାଇଗଲା । ଲୋକେ ଯାଇ ଧରି ଆଣିଲେ, ଘରଭିତରେ ପୂରାଇ ତାଲା ପକାଇ ରଖିଲେ ।

ଘରେ ବହୁତ ଦିନ ରହିଲା । ପରେ ସେ ମଣିଷ ପରି କଥାବାର୍ତ୍ତା କଲା । ଘର ତାକୁ ଏଣିକି ସୁଖ ଲାଗିଲା—ସେ ଆଉ ବଣକୁ ପଳାଇଯିବାକୁ ମନ କଲା ନାହିଁ ।

କିନ୍ତୁ ପିଲାଦିନ କଥା ସେ ଭୁଲିପାରିଲା ନାହିଁ । ତାଠାରୁ ଜଣାଗଲା, ବଣରେ ଗୋଟିଏ ବାଘ ତାକୁ ପାଳିଥିଲା । ତାର ଜ୍ଞାନ ହେଲାଦିନୁ ସେ ସେହି ବାଘ ପାଖରେ ରହି ଚାଲିଆସିଛି । ପିଲାଟି ବେଳେ ବାଘ ତାକୁ ନିଜ ଗୁମ୍ଫାରେ ରଖିଥାଏ । ଝରଣା-ପାଖରେ ଗୁଡ଼ାଏ ଶୁଖିଲା ପତର, ଶୁଖିଲା ଘାସ ଜମାଇ ତା ପାଇଁ ବିଛଣା କରିଦିଏ । ଦିନଯାକ ତାକୁ କୋଳରେ ପୂରାଇ ଶୋଇ ରହେ । ସନ୍ଧ୍ୟା ହେଲେ ପଦାକୁ ଯାଏ । ଯାହା ପଶୁମାରେ, ତାକୁ ନିଜେ ଖାଏ; କଞ୍ଚା ମାଂସ ଆଣି ପିଲାକୁ ଦିଏ ।

କ୍ରମେ ସେ ବଡ଼ ହେଲା । ଗୁମ୍ଫାରୁ ପଦାକୁ ବାହାରିଲା । ବାଘ ତାକୁ ଜମା ପାଖଛଡ଼ା କରେ ନାହିଁ । ବଣର ଅନ୍ୟ ଜନ୍ତୁମାନେ ତାକୁ କେତେଥର ଖାଇବାକୁ ବସିଥିଲେ । ବାଘ

ସେମାନଙ୍କୁ କାମୁଡ଼ି ଏପରି ଶିକ୍ଷା ଦେଲା ଯେ, ଏହାକୁ ମାରିବାକୁ ଆଉ କେହି ମନ କଲେ ନାହିଁ ।

କିଛିଦିନ ପରେ ସବୁ ବାଘଙ୍କର ସେ ଚିହ୍ନା ହୋଇଗଲା । ବାଘଦଳ ଭିତରେ ଗୋଟିଏ ହୋଇ ସେ ବଣରେ ବୁଲାବୁଲି କଲା । ପିଲାଏ ମାମୁଁ ଘରେ ବଢ଼ିଲା ପରି ସେ ବାଘ ପାଖରେ ବଢ଼ିଥିଲା; ତେଣୁ ବାଘ ତା ମାମୁଁ ।

ସେହିଦିନୁ ବାଘକୁ ସମସ୍ତେ ମାମୁଁ ବୋଲି କହିଆସୁଅଛନ୍ତି । ଅବଶ୍ୟ ସବୁ ବାଘ ମଣିଷଙ୍କୁ ଭଣଜା ଭଳି ଭାବନ୍ତି ନାହିଁ । ମଣିଷକୁ ଦେଖିଲେ ତାଙ୍କ ପାଟିରୁ ଲାଳ ବୁହେ; ପେଟ ଭୋକରେ ଆଉଟ୍ ପାଉଟ୍ ହୋଇଯାଏ । ମଣିଷ ରକ୍ତ ଚାଖିବାକୁ ମନ ହାଇଁପାଇଁ ହୁଏ । ଭଣଜାଂକୁ ଦେଖିଲେ କେଉଁ ମାମୁଁର ଭଲା ଏପରି ହେବ ?

ଅବଶ୍ୟ ଭାଗବତରେ ଅଛି, କଂସ ମାମୁ ଭଣଜା ଶ୍ରୀକୃଷ୍ଣଙ୍କୁ ମାରିବ ବୋଲି କେତେ ଫିକର କରିଥିଲା; କିନ୍ତୁ ଶେଷରେ ନିଜେ ମଲା ।

—୨—

ବାଘ ଏସିଆ ମହାଦେଶର ଜଙ୍ଗଲରେ ବହୁତ ଦେଖା ଯାଆନ୍ତି । ଆମ ଭାରତବର୍ଷର ପ୍ରାୟ ସବୁ ଅଞ୍ଚଳରେ ବାଘ ଅଛନ୍ତି । କିନ୍ତୁ ବଙ୍ଗଳାର ସୁନ୍ଦରବନ ବାଘଙ୍କ ପାଇଁ ପ୍ରସିଦ୍ଧ । ଏଠାରେ ରହୁଥିବା ବାଘ ପୃଥିବୀର ସବୁ ଅଞ୍ଚଳର ବାଘଙ୍କ ଅପେକ୍ଷା ବେଶି ବଳୁଆ, ଦେଖିବାକୁ ମଧ୍ୟ ଖୁବ୍ ସୁନ୍ଦର ।

ବାଘ କେତେ ପ୍ରକାରର ଅଛନ୍ତି । ସେମାନଙ୍କ ମଧ୍ୟରେ ମହାବଳ ବାଘ ପ୍ରଧାନ । ସେମାନଙ୍କ ତଳକୁ ଚିତାବାଘ ।

ଆମ ଓଡ଼ିଶାର ଜଙ୍ଗଲମାନଙ୍କରେ ମଧ୍ୟ ବହୁତ ବାଘ ଅଛନ୍ତି । ସେଥିରୁ ଅଧିକାଂଶ ଚିତାବାଘ । ବର୍ଷକୁ ହାରାହାରି ଆମ ଓଡ଼ିଶାରେ ୫୦୪ ଜଣ ଲୋକ ବାଘ କାମୁଡ଼ାରେ ମରନ୍ତି । କେତେ ଯେ ଗାଈଗୋରୁ, ମଇଁଷି, ଛେଳି, ମେଣ୍ଢାଙ୍କୁ ବାଘ ଖାଆନ୍ତି, ତାର ଇୟତ୍ତା ନାହିଁ ।

ବାଘମାନଙ୍କ ମୁହଁ ଗୋଲ୍ । ନାକତଳେ କରଡ଼ା ନିଶ, ଆଖି ଦୁଇଟା ମଧ୍ୟ ଗୋଲଗୋଲ୍; ରାତିରେ ତାହା ଆଲୁଅ ଜଳଲା ପରି ଦେଖାଯାଏ ।

ଦେହର ପେଟତଳ ଧଳା, ହଳଦିଆ ରଙ୍ଗରେ ନାଲିରଙ୍ଗ ମିଶିଲେ ଯେପରି ଦେଖାଯିବ, ପିଠି ସେହି ରଙ୍ଗ ଦିଶେ । ତା ଉପରେ କଳା କଳା ଗାରସବୁ ପଡ଼ିଥାଏ । ଦେହଯାକ ଲୁମ ପୂରି ରହିଥାଏ ।

ବଡ଼ ବଡ଼ ବାଘ ସବୁ ଲାଙ୍ଗୁଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ ଆଠ ନଅ ହାତଯାଏ ଲମ୍ବ ହୁଅନ୍ତି । ସେମାନଙ୍କ ଓଜନ ତିନି ମହଣରୁ ପାଞ୍ଚ ମହଣ ପର୍ଯ୍ୟନ୍ତ ହୋଇଥାଏ ।

ବାଘ ଦେହରେ ବହୁତ ବଳ । ଗୋଟାଏ ବଡ଼ ବଳଦ ବା ମଇଁଷିକୁ ସେ ମୁହଁରେ କାମୁଡ଼ି ଧରି ଅକ୍ଳେଶରେ ତିନି ଚାରି ମାଇଲ ବାଟ ଦଉଡ଼ି ଯାଇପାରେ । ହାତୀ ପରି ଜନ୍ତୁକୁ ମଧ୍ୟ ସେ ଅନେକ ସମୟରେ କାବୁ କରିପକାଏ ।

ବାଘ ଦିନଯାକ ଗହନ ବନଭିତରେ ଶୋଇ ରହେ, ରାତି ହେଲେ ବୁଲି ଶିକାର ଖୋଜେ । ବଣରୁ ହରିଣ, ବାରହା ପ୍ରଭୃତି ଜନ୍ତୁ ମାରି ଖାଏ । ବଣଜନ୍ତୁ ଅପେକ୍ଷା ଗାଈଗୋରୁ, ମଇଁଷି, ଛେଳି ପ୍ରଭୃତି ପୋଷାଜନ୍ତୁ ଖାଇବାକୁ ସେ ବେଶି ଭଲ ପାଏ । ଥରେ କୌଣସି ଗ୍ରାମରେ ଗୋଟିଏ ପୋଷାଜନ୍ତୁ

ଖାଇଲେ, ବରାବର ସେ ଗାଆଁକୁ ଆସୁଥାଏ; ଆଉ ବଣଜନ୍ତୁଙ୍କୁ ଛୁଏଁ ନାହିଁ ।

ବାଘ ସାଧାରଣତଃ ମଣିଷକୁ ଭୟ କରେ; କିନ୍ତୁ ଥରେ ମଣିଷ ରକ୍ତର ସୁଆଦ ତା ପାଟିରେ ଲାଗିଗଲେ, ସେ ତେଣିକି ବରାବର ମଣିଷ ଖୋଜି ଖାଏ । ସାଧାରଣରେ ଦେଖାଯାଏ, ବୁଢ଼ା ହୋଇଗଲେ ବାଘ ମଣିଷ ମାରିବାକୁ ଇଚ୍ଛା କରେ । ସେତେବେଳକୁ ତାର ବଳ କମିଯାଇଥାଏ, ଦଉଡ଼ିପାରେ ନାହିଁ; ତେଣୁ ଅନ୍ୟ ଜୀବଜନ୍ତୁ ଶିକାର କରିପାରେ ନାହିଁ । ଅନ୍ୟ ଜନ୍ତୁ ଅପେକ୍ଷା ମଣିଷକୁ ମାରିବା ସହଜ । ସେଥିପାଇଁ ସେ ମଣିଷ ମାଂସ ଖାଇବାକୁ ମନ ବଳାଏ । ସୁନ୍ଦରବନ ବାଘ ଶିକାର ନ ପାଇଲେ ନଈରୁ ମାଛ ମାରି ଖାଆନ୍ତି ।

ବାଘ ଜିଭରେ ସରୁସରୁ କଣ୍ଟା ଥାଏ, ତେଣୁ ସେ ଚାଟିଦେଲେ ହାଡ଼ରୁ ମାଂସ ସବୁ ପୋଛି ହୋଇ ଚାଲିଯାଏ ।

ବାଘ ରାତିକ ମଧ୍ୟରେ ଦଶ ବାର ମାଇଲ ବାଟ ଯାଇ ଶିକାର ଖୋଜି ପୁଣି ନିଜ ଘରକୁ ଫେରିପାରେ । ନଈନାଳ ପଡ଼ିଲେ ବିନା ବାଧାରେ ପହଁରି ପାରି ହୋଇଯାଏ । ଗ୍ଲେଟଗ୍ଲେଟ ବୁଦା ଗଛ ଉପରକୁ ବି ଚଢ଼ି ଯାଇପାରେ ।

ବାଘୁଣୀ ବାଘ ଅପେକ୍ଷା ଗ୍ଲେଟ ହୁଏ । ତା ବଳ ମଧ୍ୟ ବାଘ ବଳ ଅପେକ୍ଷା କମ୍ । ବାଘୁଣୀ ଥରକେ ଦୁଇଟିରୁ ଚାରି ପାଞ୍ଚଟି ଯାଏ ଛୁଆ ଜନ୍ମକରେ । ଏହି ଛୁଆଗୁଡ଼ିକ ପ୍ରଥମରେ ଅତି ସାନ ହୋଇଥାନ୍ତି । ବାଘୁଣୀ ତାଙ୍କୁ ସବୁବେଳେ କଡ଼ା ପହରା ଦେଇ ଜଗି ରହେ । ସେହି ସମୟରେ ସେ ଜମା ବାଘକୁ ପାଖରେ ନାହିଁ । ବାଘ ବଣରୁ ଶିକାର ଖୋଜି ଆଣି ତାଙ୍କୁ ଖାଇବାକୁ ଦିଏ ।

ପିଲା ବଡ଼ ହୋଇଗଲେ ମାଆଠାରୁ ଆଉ ଦୁଧ ଖାଆନ୍ତି ନାହିଁ । ସେତେବେଳେ ବାଛୁରି, ଛୁଆ ହରିଣ, ଠେକୁଆ, ଭଲୁଆ ଆଦି ମାରି ସେମାନେ ଖାଆନ୍ତି । ଛୁଆଗୁଡ଼ିକ ଶିକାର କରିବାରେ ଧୂରନ୍ଧର ହୋଇଗଲେ ବାପମାଆଠାରୁ ଅଲଗା ହୋଇ ଯାଆନ୍ତି । ନିଜ ବଳରେ ରୋଜଗାର କରି ପେଟ ପୋଷନ୍ତି ।

ଚିତାବାଘଙ୍କ ଦେହରେ ଲମ୍ବା ଲମ୍ବା ଗାର ନ ଥାଏ, କଳା ବିନ୍ଦୁସବୁ ରହିଥାଏ । ଏଗୁଡ଼ିକ ଚିତା ପରି ଦିଶେ; ତେଣୁ ତା ନାମ ଚିତାବାଘ ।

ବାଘ ଚମଡ଼ା ଭାରି ସୁନ୍ଦର ଦିଶେ । ସେହି ଚମଡ଼ା ପାଇବା ଆଶାରେ ଅନେକେ ବାଘ ଶିକାର କରନ୍ତି ।

ବାଘଙ୍କୁ ପୋଷି ସର୍କସବାଲା ଖେଳ ଦେଖାନ୍ତି । ଯେତେ ପୋଷା ମାନିଲେ ବି ବାଘ ନିଜ ଗୁଣ ଛାଡ଼େ ନାହିଁ । ସୁବିଧା ପାଇଲେ ପୋଷିଥିବା ଲୋକକୁ କାମୁଡ଼ି ପକାଏ, ମାରି ଖାଏ ।

—୩—

ଗୋଟିଏ ବାଘ ଥରେ ମଣିଷ ରକ୍ତର ସୁଆଦ ପାଇଗଲା, ତେଣୁ ଗହନ ବନ ତାକୁ ଆଉ ଭଲ ଲାଗିଲା ନାହିଁ । ଗାଁ ପାଖ ପାହାଡ଼ ଗୁମ୍ଫାରେ ଆସି ସେ ରହିଲା । ରାତିରେ ଲୁକି ଲୁକି ମଣିଷ ଖୋଜିଲା । ବାଟଘାଟରେ ଯାହାକୁ ପାଇଲା, ତା ବେକଟି କାମୁଡ଼ି ଧରି ଗୁମ୍ଫାକୁ ନେଇ ପଳାଇଗଲା; ମନମଉଜରେ ଭୋଜି କଲା ।

ଏହିପରି ଗାଁରେ କେତେଗୁଡ଼ିଏ ଲୋକ ବାଘ ପେଟରେ ଗଲେ । ଗାଁଭିତରେ କାନ୍ଦବୋବାଳି ପଡ଼ିଗଲା । ଆଜି ତାହା ପୁଅ ହଜିଲାଣି ତ, କାଲି ଆହାର ବୁଢ଼ୀମାଆକୁ ବାଘ ନେଇଗଲାଣି । ଆଠ ଦଶ ଦିନ ମଧ୍ୟରେ ପାଞ୍ଚ ଜଣ ସେ ଗାଁରୁ ମଲେ । ଗାଁଲୋକେ ପ୍ରମାଦ ଗଣିଲେ ।

ସନ୍ଧ୍ୟା ହେଲା ପରେ କେହି ଆଉ ପଦାକୁ ବାହାରିଲେ ନାହିଁ। ବାଘ ବାଟରେ ଘାଟରେ କାହାକୁ ନ ପାଇ ଘର ଭିତରେ ପଶି ଭଣଜା ପ୍ରାଣୀମାନଙ୍କୁ ସଙ୍ଖୁଳିଲା। ଯାହା ଘରେ ସୁବିଧାରେ ପଶିପାରିଲା, ତା ଘରୁ କାହାକୁ ନା କାହାକୁ ମୁହଁରେ ଧରି ଛୁ।

ଲୋକେ ବାଘକୁ ମାରିବା ପାଇଁ ବହୁତ ଫନ୍ଦ ଫିକର କଲେ; ମାତ୍ର ବାଘ ଏତେ ଚତୁର ଯେ, ତାର ପତ୍ତା ପାଇଲେ ନାହିଁ। ଶେଷକୁ ସହରରୁ ଶିକାରୀ ଆସିଲେ; ତାଙ୍କ ହାତରେ ବଡ଼ ବନ୍ଧୁକ, ସାଙ୍ଗରେ ଜଣେ ଗୁରକର।

ପାହାଡ଼ପାଖ ଗୋଟିଏ ଗଛଉପରେ ମଞ୍ଚା ବନ୍ଧା ହେଲା। ମଞ୍ଚାରେ ଶିକାରୀ ବନ୍ଧୁକ ଧରି ଜଗିବସିଲେ। ଆଉ ଗୋଟିଏ ଗଛ ଉପରେ ତାଙ୍କର ଗୁରକରଟି ବସିଲା। ତଳେ ଗୋଟିଏ ମଇଁଷିକି ମୋଟା ଦଉଡ଼ାରେ ବାନ୍ଧିଦିଆଗଲା।

ରାତି ହେଲା। ଗାଢ଼ ଅନ୍ଧାର ରାତି। ମୁହଁକୁ ମୁହଁ ଦିଶୁ ନ ଥାଏ। ବାଘମାମୁ ଦରୁ ବାହାରିଲା। କାଲି ରାତିରେ ଗୋଟିଏ ମଣିଷ ସେ ଖାଇଛି। ଆଜି ମଣିଷ ମାରିବାକୁ ଆଉ ତାର ଇଚ୍ଛା ନାହିଁ। କେବଳ ଘୁରିଆଡ଼ ଟିକିଏ ମସ୍ତ କରି ଆସିବାକୁ ମନ କଲା; କିନ୍ତୁ ଅଳ୍ପ ବାଟ ଆସିଲାକ୍ଷଣି ଦେଖିଲା, ଗୋଟାଏ ମସ୍ତବଡ଼ ମଇଁଷି। ଠାକୁରେ ଗୋଡ଼ତଳେ ଆଣି ଆହାର ଯୋଗାଇ ଦେଇଛନ୍ତି, ଏ ସୁଯୋଗ କିଏ ଛାଡ଼େ ?

ବାଘ ମୁହୂର୍ତ୍ତେ ମଇଁଷିଟାକୁ ଗୁହିଁ ରହିଲା। ତା ପରେ ଛକଛକ ଏପରି ଏକ କୁଦା ମାରିଲା ଯେ, ତା ବେକଉପରେ ଆସି ପଡ଼ିଗଲା। ମଇଁଷିଟା ପ୍ରାଣବିକଳରେ ଗଁ ଗଁ ହୋଇ ଗର୍ଜି ଉଠିଲା।

ଅନ୍ଧାରରେ କିଛି ଦିଶୁ ନ ଥାଏ। ଭୁଲରେ ଶିକାରୀ ସାଙ୍ଗରେ

ଆଲୁଅ ଆଣିପାରି ନ ଥିଲେ । ଏହି ଶବ୍ଦରୁ ସେ ଜାଣିଲେ ଯେ, ବାଘ ଆସିଗଲା । ଶବ୍ଦକୁ ଲକ୍ଷ୍ୟ କରି ସେ ଗୁଳି ଚଳାଇଲେ । ବନ୍ଧୁକ ଶବ୍ଦ ସାଙ୍ଗରେ ମଇଁଷିର ଗଁ ଗଁ ଶବ୍ଦ, ତା ସହିତ ବାଘର ଗର୍ଜନ—ସେ ବଣଟାଯାକ ଯେପରି କମ୍ପିଉଠିଲା । ତା ସାଙ୍ଗକୁ ଶିକାରୀଙ୍କ 'ବାପା ଲୋ, ମଲି ଲୋ' ବିକଳ ଶବ୍ଦ ମଧ୍ୟ ଗୁଞ୍ଜି ଉଠାଇଦେଲା ।

ଅନ୍ୟ ଗଛରେ ଗୃହକରଟି ବସିଥିଲା । ରାତିଯାକ ଗୃହ୍ନିଁ ଗୃହ୍ନିଁ ତାକୁ ଟିକିଏ ନିଦ ଲାଗି ଆସୁଥାଏ । ଏ ଗର୍ଜନରେ ସେ ଚମକିଉଠିଲା । ତା ନିଦ କୁଆଡ଼େ ଗୁଲିଗଲା । ସେ ତଳକୁ ଗୃହ୍ନିଁଲା; ମାତ୍ର କିଛି ଦିଶିଲା ନାହିଁ । କେବଳ ଅଦ୍ଭୁତ ଶବ୍ଦ ସେ ଶୁଣିପାରିଲା । ଶିକାରୀ ବିକଳ ହେଉଛି, ଶିକାର ବି ଗର୍ଜନ କରୁଛି । ଜଣେ ଉପରେ, ଜଣେ ତଳେ । ସେ କିଛି ବୁଝିପାରିଲା ନାହିଁ । ଖାଉନ୍ଦଙ୍କର କଅଣ ହେଲା, ତାହା ଜାଣିବାକୁ ମନ ଉଚ୍ଛନ୍ନ ହେଲା; କିନ୍ତୁ ତଳକୁ ଓହ୍ଲାଇବାକୁ ସାହସ ହେଲା ନାହିଁ ।

କିଛି ସମୟ ପରେ ଆକାଶରେ ଜହ୍ନ ଉଇଁଲା, ବଣଟା ଟିକିଏ ଫର୍ଚ୍ଚା ଦେଖାଗଲା । ଗୃହକର ଗଛ ଉପରୁ ଦେଖି ପାରିଲା, ତଳେ ମଇଁଷି ମରି ପଡ଼ିଛି । ବାଘଟା ମନକୁ ମନ ବଣ ଭିତରକୁ ପଶି ଯାଉଛି; ପୁଣି ସେଠାକୁ ଦୌଡ଼ି ଆସି ତଳେ ଗଡ଼ୁଛି ।

ଗୃହକରଟି ଶିକାରୀଙ୍କୁ କେତେ ଡାକିଲା, ମାତ୍ର କେହି ଜବାବ ଦେଲେ ନାହିଁ । ସେ ଜାଣିଗଲା ଯେ ବାଘଟି ଶିକାରୀଙ୍କ ଗୁଳି ଖାଇବା ସଙ୍ଗେ ସଙ୍ଗେ ଶିକାରୀଙ୍କୁ ବି ଖାଇଛି । ତେବେ ଏତେ ଉଚ୍ଚରୁ ଖାଉଁନ୍ଦଙ୍କୁ ସେ ଧଇଲା କିପରି ?

ସେ କିଛି ଉପାୟ ଠିକ୍ କରି ନ ପାରି ଗଛ ଉପରେ ବସି ରହିଲା । କ୍ରମେ ରାତି ପାହିଲା । ଗାଁରୁ ଦଳେ ଲୋକ୍ ଠେଙ୍ଗା ବାଡ଼ି ଧରି ଆସି ସେଠାରେ ପହଞ୍ଚିଲେ ।

ସେତେବେଳକୁ ବାଘ ବାଡ଼େଇପିଟି ହୋଇ ନସ୍ତାନ୍ତ ହୋଇ ଗଲାଣି । ଆଉ ଉଠିବାର ଶକ୍ତି ନାହିଁ । ଲୋକଙ୍କୁ ଦେଖି ସେ ଶୁକରଟି ଗଛରୁ ଓହ୍ଲାଇଲା । କିଛି ଦୂରରେ ଠିଆ ହୋଇ ସମସ୍ତେ ଦେଖିଲେ, ବାଘ ଦେହଯାକ ବାଘୁଆ ମହୁମାଛି ଲଗିଛନ୍ତି । କେତେଗୁଡ଼ାକ ଏତେ ଯୋର୍‌ରେ କାମୁଡ଼ୁଛନ୍ତି ଯେ, ବାଘ ସେ କାମୁଡ଼ା ସହି ନ ପାରି ଛଟପଟ ହୋଇ ତଳେ ଗଡ଼ୁଛି । ଯେତେବେଳେ କବଳରେ ନେବା ଗୁଟି ପକାଉଛି, ସେତେବେଳେ ତା ଜିଭରେ ମଧ୍ୟ ଗୁଡ଼ାଏ ମାଛି ଲାଗି ଜିଭକୁ କାମୁଡ଼ି ଧରୁଛନ୍ତି । ଆଖି ଦୁଇଟା ତ ଫୁଟିଯିବା ଉପରେ । ବାଘୁଆ ମହୁମାଛିଙ୍କ କବଳରେ ପଡ଼ି ବାଘମାମୁଙ୍କ ଅବସ୍ଥା କାହିଲ ।

ଲୋକେ ତ ଆଗରୁ ଚଢ଼ି ରହିଥିଲେ । ବାଘ ଯାହା ଟିକିଏ ଧୁକ୍‌ଧୁକ୍ ହେଉଥିଲା, ଠେଙ୍ଗା ବାଡ଼ିରେ ପିଟିପିଟି ତାହା ବି ଶେଷ କରିଦେଲେ ।

ବାଘମଲା ପରେ ଶୁକରର ମନେ ପଡ଼ିଲା, ତା ଖାଉନ୍ଦ ଗଲେ କୁଆଡ଼େ ?

ଗାଁ ଲୋକଙ୍କ କଥାରୁ ସେ ଜାଣିଲା ଯେ, ଶିକାରୀ ଗଛରେ ଯାଇ ଗାଁରେ ଆଶ୍ରୟ ନେଇ ଅଛନ୍ତି । ସେ ଅନ୍ଧାରରେ ଯେଉଁ ବନ୍ଧୁକ ମାରିଥିଲେ, ତା କେବଳ ବାଘର ଗୋଟିଏ ଗୋଡ଼ରେ ବାଜିଥିଲା; ବେଶି କିଛି କ୍ଷତ କରି ନ ଥିଲା । ଦ୍ୱିତୀୟ ଥରର ଗୁଳି ଦେହରେ ବି ବାଜିଲା ନାହିଁ; ତଳେ ଥିବା ଗୋଟାଏ ମହୁ ଫେଣାରେ ବାଜିଲା । ସେଥିରୁ ଅସଂଖ୍ୟ ମହୁମାଛି ବାହାରି ତଳେ ବାଘ ଦେହରେ ଲେସି ହୋଇଗଲେ । କେତେ ଗୁଡ଼ାଏ ଉପରକୁ ଯାଇ ଶିକାରୀ ମୁହଁ ଓ ଦେହକୁ କାମୁଡ଼ି ପକାଇଲେ । ଶିକାରୀ ବାଘ ମାରିବାକୁ ଯିନା ବନ୍ଧୁକ ରଖିଥିଲେ, ବାଘୁଆ ମାଛି ମାରିବାକୁ ତ

ତାଙ୍କ ପାଖରେ କିଛି ଅସ୍ତ୍ର ନାହିଁ । ତେଣୁ ସେ ବଡ଼କଲରେ ପାଟି କରି ଉଠିଲେ । ମୁହଁରେ ଯେତେ ହାତ ବୁଲାଇଲେ, ମାଛି ସେତେ ରାଗରେ ବେଢ଼ିଗଲେ । ଶିକାରୀ ବାଧ୍ୟ ହୋଇ ତଳକୁ ଓହ୍ଲାଇ ଆସିଲେ । ବାଦୁଆ ମାଛିଙ୍କ ଦାଉରେ ଛଟପଟ ହୋଇ ମରିବା ଅପେକ୍ଷା ବାଘ ମୁହଁରେ ସାଙ୍ଗେ ସାଙ୍ଗେ ମରିବା ଭଲ— ଏହାହିଁ ସେ ଠିକ୍ କରିନେଲେ । ମାତ୍ର ଓହ୍ଲାଇ ଆସି ଦେଖନ୍ତି ତ, ବାଘ ମଧ୍ୟ ମହୁମାଛିଙ୍କ କାମୁଡ଼ାରେ ଛଟପଟ ହେଉଛି । ସେ ବଡ଼କଲରେ ବଣକୁ ପଶି ଗଲାବେଳେ ଶିକାରୀ ଗାଁ ଭିତରକୁ ପଳାଇ ଆସିଲେ । ଗାଁ ଲୋକେ ସେବା ଶୁଶ୍ରୂଷା କରିବାରୁ ଶିକାରୀ ବର୍ତ୍ତମାନ ଟିକିଏ ଭଲ ଅଛନ୍ତି ।

ବାଘ ତ ମଲା; ତେଣୁ ଗାଁ ଲୋକଙ୍କୁ ବ୍ୟସ୍ତ କରିବାକୁ ଆଉ କେହି ରହିଲେ ନାହିଁ । ଶିକାରୀ ମଧ୍ୟ ସେହି ଦିନୁ ଶିକାର କରିବା ଛାଡ଼ିଦେଲେ । ବାଘ ଶିକାର କରିବାକୁ ଯାଇ ବାଦୁଆ ମହୁ-ମାଛିଙ୍କ ଠାରୁ ଯେ ଏପରି ପରାଭବ ମିଳିବ, ଏହା ସେ କେବେ-ହେଲେ ଭାବି ନ ଥିଲେ ।

—୪—

ଆଉ ଗୋଟିଏ ବାଘ ଖୁବ୍ ଉପଦ୍ରବ କରୁଥିଲା । ସନ୍ଧ୍ୟା ହେଲାକ୍ଷଣି ସେ ଆଉ ବଣରେ ରହେ ନାହିଁ, ନିର୍ଭୟରେ ଆସି ଗାଁ ମୁଣ୍ଡରେ ବୁଲାବୁଲି କରେ, ଶିକାର ସନ୍ଧାନରେ ରହେ ।

ଗାଁରୁ ପ୍ରଥମେ ମେଣ୍ଢା, ଛେଳି, ଗାଈଗୋରୁ କେତେ ମାଇଲା । କ୍ରମେ ତାହାର ସାହସ ବଢ଼ିଗଲା । ମଣିଷ ମାଂସ ଖାଇବା ପାଇଁ ତା ପାଟି ଶଳଶଳ ହେଲା; କିନ୍ତୁ ସେତେବେଳକୁ ସମସ୍ତେ ସାବଧାନ ହୋଇ ଯାଇଥିଲେ । ସନ୍ଧ୍ୟା ହେବା ଆଗରୁ ଲୋକେ

କବାଟ କିଳି ଘରଭିତରେ ରହୁଥିଲେ । ଗାଈଗୋରୁଙ୍କୁ ବି ଆଉ ପଦାକୁ ଛାଡ଼ୁନଥିଲେ ।

ବୁଢ଼ା ଛଅ ଦିନ ଯାଏ ବାଘ କିଛି ଶିକାର ପାଇଲା ନାହିଁ । ଆଗେ ଶିକାର ପାଇବା ସାଙ୍ଗେସାଙ୍ଗେ ତାକୁ ଧରି ବଣଭିତରକୁ ଚାଲିଯାଉଥିଲା; ପୁଣି ଯାଇ ଆଉ ଦିନ ସନ୍ଧ୍ୟାକୁ ଆସୁଥିଲା । କିନ୍ତୁ ଏବେ ଶିକାର ନ ମିଳିବାରୁ ରାତିଯାକ ଗାଁ ମୁଣ୍ଡରେ ବୁଲେ, ରାଗରେ ଗର୍ଜନ କରେ, ସତେ ଯେପରି ଗାଁଲୋକଙ୍କୁ ଧମକ ଦିଏ— "ଦେଖ, ମୋତେ ଉପାସ ରଖୁଛ, ତୁମର ଭଲ ଗତି ହେବ ନାହିଁ ।"

ସମସ୍ତେ ଜାଣନ୍ତି ଯେ, ରାତି ପାହିବା ଆଗରୁ ବାଘ ବଣକୁ ଚାଲିଯାଏ । ତେଣୁ ସକାଳୁ ସମସ୍ତେ ଘରୁ ପଦାକୁ ବାହାରନ୍ତି, ନିଜନିଜ କାମରେ ଲାଗିଯାଆନ୍ତି ।

ସେ ଗାଁର ଗୋଟିଏ କେଉଟ ନିତି ମାଛ ଧରିଲେ ପେଟ ପୋଷେ । ଆଗେ ଅନେକ ସମୟରେ ରାତିରେ ମାଛ ଧରିବାକୁ ଯାଉଥିଲା; ମାତ୍ର ବାଘ ମାତିଲା ଦିନୁ ରାତିରେ ଯିବା ବନ୍ଦ ।

କେଉଟ ସେଦିନ ଭୋରରୁ ଜାଲଟି କାନ୍ଧରେ ପକାଇ ବାହାରିଲା । ମୁହଁଅନ୍ଧାର, ଦୂର ବାଟ ଭଲ ରୂପେ ଦିଶୁ ନାହିଁ । କେଉଟ ନଈକୂଳେ ପହଞ୍ଚି ଭଉଁରୀ ଜାଲଟି ଫିଟାଇଲା । ଆଣ୍ଠୁଏ ପାଣିକୁ ପଶିଯାଇ ଜାଲ ଫୋପାଡ଼ିବାକୁ ହାତ ଉଠାଇଛି, ପଛଆଡ଼ୁ ଗର୍ଜନ ଶୁଭିଲା । ଚମକିପଡ଼ି ଗୁଡ଼ିହିଁ ଦିଏ ତ, ପଛଆଡ଼େ ବାଘମାମୁ, ଠିକ୍ ତା ଉପରକୁ କୁଦିପଡ଼ିବାକୁ ତିଆରି ହୋଇ ରହିଛି ।

କେଉଟକୁ ଆଉ ବୁଦ୍ଧିବାଟ ଦିଶିଲା ନାହିଁ । ନଈରେ ଜାଲ ପକାଇବ କଣ ? ବୁଲିପଡ଼ି ଖୁବ୍ ଯୋରରେ ବାଘ ଉପରକୁ ଜାଲ ଫିଙ୍ଗିଦେଲା । ତରତରରେ ହାତରୁ ଦଉଡ଼ି ଫିଟାଇ ପକାଇ

ଦେଇ ନଈଭିତରେ ପଶିଗଲା । ଅଳ୍ପ ଚଉଡ଼ା ନଈ, ପ୍ରାଣଭୟରେ ପାଣିରେ ପହଁରି ଯାଇ ଆର ପାଖରେ ପହଞ୍ଚିଲା । ସାଙ୍ଗେସାଙ୍ଗେ ସେଠାରେ ଥିବା ଗୋଟାଏ ତାଳଗଛ ଉପରେ ଚଢ଼ି ଅଗରେ ବସି ରହିଲା । ଖୁବ୍ ଜୋରରେ ପାଟି କରି ଡାକ ପକାଇଲା "ବାଘ ଖାଇଗଲା ହୋ, ଧାଇଁପଡ଼ ।"

ସେତେବେଳକୁ ଟିକଏ ଫର୍ଚ୍ଚା ହୋଇଗଲାଣି; ଲୋକେ ଉଠି ପଦାକୁ ଆସିଲେଣି । କେଉଟ ପାଟି ଶୁଣି ଠେଙ୍ଗାବାଡ଼ି, କୁରାଡି, କଟୁରୀ ପ୍ରଭୃତି ଧରି ଧାଇଁଲେ ।

ଏଣେ ବାଘ ମହାରାଗ, ଖୁବ୍ ବ୍ୟସ୍ତ । ରାତିସାରା ତ ଉପାସରେ କଟିଛି; ସକାଳୁ ଗୋଟାଏ ଶିକାର ଜୁଟିଥିଲା ଯେ, ସେ ଠିକ୍ ପାଟି ପାଖରୁ ଖସିଯାଇଛି । କେବଳ ସେତିକି ନୁହେ, ଜାଲଭିତରେ ଛନ୍ଦିହୋଇ ସେ ନିଜେ ଉଠିପାରୁ ନାହିଁ କି ଦଉଡ଼ିପାରୁ ନାହିଁ । ସେ ତଳେ ବହୁତ ଗଡ଼େଇ ତଡ଼େଇ ହେଲା । ନଖରେ, ଦାନ୍ତରେ ଜାଲକୁ ଛିଡ଼ାଇ ଟିକିଟିକି କରି ପକାଇଲା । କୌଣସି ପ୍ରକାରେ ତା ମୁହଁ ଓ ଚାରି ଗୋଡ଼ ଖଲାସ ହୋଇଗଲା । କିନ୍ତୁ ପିଠି ପେଟରେ ଜାଲ ଗୁଡ଼ାଇହୋଇ ରହିଥାଏ—ସତେ ଯେପରି ସେ ହାତକଟା ଗେଞ୍ଜି ଟାଏ ପିନ୍ଧିଛି ।

ଏହି ସମୟରେ ଲୋକେ ଜମିଗଲେ । ବାଘ ଦେଖିଲା ଯେ ଆଉ ସୁବିଧା ହେବ ନାହିଁ । ସେ ଶିକାର ଆଶା ଛାଡ଼ି ବଣ ଭିତରକୁ ପଳାଇଗଲା ।

ସେହିଦିନୁ ତାର ଉତ୍ପାତ ବେଶି ବଢ଼ିଲା । ଲୋକେ ଆଉ ଗ୍ରାମରେ ଥୟ ହୋଇ ରହିପାରିଲେ ନାହିଁ । ସହରକୁ ଖବର ଦେଲେ । ଶିକାରୀ ବନ୍ଧୁକ ଧରି ବାଘ ମାରିବାକୁ ସେଠାକୁ ଆସିଲେ ।

ମାତ୍ର ବାଘ ବଡ଼ ଚତୁର । ଶିକାରୀ ଦୁଇ ରାତି ବଣ ଭିତରେ ଅନିଦ୍ରାରେ କଟାଇଲେ । ତଥାପି ବାଘକୁ ମାରିପାରିଲେ ନାହିଁ । ସେ ଯେଉଁ ଜନ୍ତୁ ବାନ୍ଧିଥାଆନ୍ତି, ବାଘ ତାକୁ କଉଶଳରେ ଆସି ଖାଇଯିଏ । ଶିକାରୀଙ୍କର ଗଣ୍ଡାଗଣ୍ଡା ଗୁଳି ନଷ୍ଟ ହୁଏ; ଅଥଚ ବାଘ ଦେହରେ ଗୋଟିଏ ସୂଚା ବାଜେ ନାହିଁ । ବାଘ ମନ ଆନନ୍ଦରେ ବନ୍ଧା ହୋଇଥିବା ପଶୁଟିକୁ ଖାଇ ଯାଉଛି ମାତ୍ରେ । ଗଲାବେଳକୁ ଅଦ୍ଭୁତ ରକମର ଗୋଟାଏ ଗର୍ଜନ କରେ । ସତେ ଯେପରି ଥଟ୍ଟା କରି ଶିକାରୀଙ୍କୁ କହେ, "ବସିଥା ଭଣଜା, ମୋ କାମ ସରିଗଲାଣି, ମୁଁ ଯାଉଛି ।"

ବାଘର ସାହସ ବଢ଼ିଗଲା । ସେ ଦିନବେଳା ମଧ୍ୟ ଗାଁ ଭିତରକୁ ଆସି ଶିକାର ଛକିଲା ।

ଦିନେ ଦୁଇଟାବେଳେ ଲୋକେ ବାଘକୁ ଦେଖିଲେ । ଶିକାରୀଙ୍କୁ ଆସି ଖବର ଦେଲେ । ଶିକାରୀ ସାଙ୍ଗେସାଙ୍ଗେ ବନ୍ଧୁକ କାନ୍ଧରେ ପକାଇ ବାହାରି ପଡ଼ିଲେ । ଗାଁଲୋକେ ମନା କରୁଥାନ୍ତି; କିନ୍ତୁ ଶିକାରୀ କାହିଁକି ବା ତା ଶୁଣିବେ ? ସେ କେତେ ବାଘ ମାରିଛନ୍ତି, ଏଇ ଛୋଟିଆ ବାଘଟା ଲାଗି ଏତେ ଦହଗଞ୍ଜ !

ଲୋକେ ମନା ସିନା କରୁଥିଲେ, ଶିକାରୀ ଆଗେଆଗେ ଯିବାରୁ ଠେଙ୍ଗାବାଡ଼ି ଧରି ପଛରେ ଚାଲିଲେ ।

ଗାଁ ମୁଣ୍ଡରେ ଅଳ୍ପ ବଣ, ଆଣ୍ଠୁଏ ଉଚ୍ଚ ଘାସ, କଣ୍ଟାବୁଦା । ଶିକାରୀ ଏପାଖ ସେପାଖ ବାଘ ଖୋଜି ବୁଲୁଛନ୍ତି । ତାଙ୍କ ମନରେ ବଡ଼ ରାଗ । ଯେ କୌଣସି ପ୍ରକାରେ ହେଉ ଆଜି ବାଘଟାକୁ ମାରିବାକୁ ହେବ । ନ ହେଲେ ଗାଁ ଲୋକଙ୍କ ପାଖରେ ମାନମର୍ଯ୍ୟାଦା ରହିବ ନାହିଁ ।

ଏହି ସମୟରେ ପଛରୁ କିଏ ଡାକ ପକାଇଲା, 'ବାଘ' ।

ଶିକାରୀ ଫେରିପଡ଼ି ଚାହିଁଦେଲେ । ପଛରେ ତାଙ୍କଠାରୁ ମୋଟେ ପାଞ୍ଚ ଛ ହାତ ଦୂରରେ ବାଘ ଠିଆ ହୋଇ ତାଙ୍କୁ ଚାହିଁଛି । ସେ ସାଙ୍ଗେସାଙ୍ଗେ ବନ୍ଧୁକ ସଜାଡ଼ି ଧରିଲେ; ମାତ୍ର ଗୋଡ଼ାଉଁ ଠିଆ ହୋଇପାରିଲା ନାହିଁ । ଆଗରୁ ବାଘ ତାଙ୍କ ଉପରକୁ କୁଦିପଡ଼ିଲା । ସେ ଚିତ୍ ହୋଇ ତଳେ ପଡ଼ିଗଲେ । ବନ୍ଧୁକ ହାତରୁ ଛିଟିକି ଦଶ ହାତ ଦୂରରେ ପଡ଼ିଲା ।

ବଳେଇ ତା ଛୁଆକୁ ବେକରୁ କାମୁଡ଼ି ନେଇଗଲା ପରି ବାଘ ଶିକାରୀଙ୍କ ବେକକୁ କାମୁଡ଼ି ଧରି ବଣଭିତରକୁ ପଶିଗଲା । ଲୋକଙ୍କ ହାହାକାର ଚିତ୍କାରରେ ସେ ଜାଗା କମ୍ପିଗଲା । ବାଘର ସେଥିପ୍ରତି ମୋଟେ ଖାତିର ନ ଥାଏ ।

ଆଗରୁ ବାଘକୁ ଦେଖି ନାରଣ ଗୋଟାଏ ଗଛ ଉପରେ ଚଢ଼ିଯାଇଥିଲା । ନାରଣ ସେ ଗାଁର ସର୍ଦ୍ଦାର । ସେ ଚାହିଁ ଦେଖିଲା, ବାଘ ଶିକାରୀଙ୍କୁ ନେଇ ଗୋଟାଏ ଗ୍ଲେଟ ଟିପ ଉପରକୁ ଉଠିଲା । ତା ମୁଣ୍ଡରେ ହଠାତ୍ ବୁଦ୍ଧି ଖେଳିଗଲା । ସେ ଗଛରୁ ଓହ୍ଲାଇ ଆସି ଗାଁକୁ ଦଉଡ଼ିଲା । ଆଜ ଥରେ ଗାଁ ଲୋକଙ୍କୁ ଡାକ ଏକଯୁଟ କଲା । ତା କଥା ଅନୁସାରେ ଦୁଇ ଟିଣ କିରାସିନ ଓ ଠେଙ୍ଗାବାଡ଼ି ଧରି ଲୋକେ ପୁଣି ବଣଭିତରକୁ ଆସିଲେ ।

ଟିପଟା ଖୁବ୍ ଉଚ୍ଚ ଜାଗା, ତା ଉପରେ ପୁରୁଷେ ଉଚ୍ଚର ଘାସ ବଣ ଓ କଣ୍ଟା ବୁଦା । ଖଗ ବନ । ଜାଳ କରିବା ପାଇଁ ପାଖ ଆଖରେ ଘାସ ଓ ବୁଦାସବୁ କାଟି ଲୋକେ ପକାଇ ଦେଇ ଯାଇଥିଲେ । ସେ ସବୁ ଶୁଖି ରହିଥିଲା । ନାରଣ କଥା ଅନୁସାରେ ଲୋକେ ସେ ଜାଳଉପରେ କିରାସିନ ତେଲ ଢାଳିଦେଲେ; ଘେରିପାଖରେ ନିଆଁ ଲଗାଇଦେଲେ ।

ନିଆଁ ହୁ ହୁ ଜଳିଉଠିଲା । କ୍ରମେ ଢିପଆଡ଼କୁ ତାହା ମାଡ଼ି-ଗଲା । ବାଘ ନିଶ୍ଚିନ୍ତରେ ବସି ଶିକାରଙ୍କ ମାଂସ ଖାଉଥିଲା । ନିଆଁ ଧାସ ପ୍ରବଳ ହେବାରୁ ଉଠି ଚାରିଆଡ଼କୁ ଚାହିଁଲା । ଆଜ ଖାଇବ କଅଣ ? କପରି ସେଠାରୁ ପଳାଇଯିବ, ସେଥିପାଇଁ ଦଉଡ଼ ଧାପଡ଼ କଲା ! ଯେଉଁ ପାଖକୁ ଗଲା, ସେ ପାଖରେ ନିଆଁ । ପଦାରେ ଲୋକମାନେ ପାଟି କରି, ବାଜା ଟିଣ ଆଦ ବାଡ଼େଇ ସେ ସ୍ଥାନଟା କମ୍ପାଇ ଦେଉଥାଆନ୍ତି ।

ବାଘ ବନ୍ଧୁର ଏପାଖ ସେପାଖ ଦଉଡ଼ାଦଉଡ଼ି କଲା । ରାଗରେ ଗର୍ଜନ ଛାଡ଼ିଲା । ମାତ୍ର ଖସିଯିବାର ଉପାୟ ପାଇଲା ନାହିଁ । ନିଆଁ ଧାସ କ୍ରମେ ଯାଇ ତା ଦେହରେ ଲାଗିଲା । ଆଗରୁ ତ ଜାଲ ତା ଦେହଯାକ ଗୁଡ଼ାଇ ହୋଇ ରହିଥିଲା । ସେଥିରେ ନିଆଁ ଲାଗି ଯିବାରୁ ଚର୍ ଚର୍ ଜଳିଉଠିଲା । ସର୍ବାଙ୍ଗରୁ ଲୁମଚକ ସାଆଁରେଇ ହୋଇଗଲା । ପିଲାଏ ମୁଣ୍ଡବାଳଯାକ ଖିଅର ହୋଇ ପଡ଼ିଲେ ଯେପରି ଦେଖାଯାଏ, ତା ଦେହଟା ସେହିପରି ଦେଖାଗଲା ।

ସେ ଆଉ ସମ୍ଭାଳ ହୋଇ ରହିପାରିଲା ନାହିଁ । ପଦାକୁ ପଳାଇଯିବ ବୋଲ ଖୁବ୍ ଯୋରରେ କୁଦା ମାଇଲା । ମାତ୍ର ଠିକ୍ ନିଆଁ ଉପରେ ଆସି ପଡ଼ିଲା । ସେତେବେଳକୁ ତା ଅବସ୍ଥା ନିସ୍ତାନ୍ତ । ତଳେ ନିଆଁ, ଉପରେ ଲୋକଙ୍କ ଠେଙ୍ଗାମାଡ଼ । ସେ ବପୁର ଆଉ କେତେ ସମ୍ଭାଳନ୍ତା ? ସେହିଠାରେ ହିଁ ଦାନ୍ତ ନିକୁଟି ପଡ଼ିଗଲା ।

ସେତିକିବେଳେ ଗୋଟିଏ ବାର ତେର ବର୍ଷର ପିଲା ଆସି ତା ଉପରକୁ ରାଗରେ ଚାରି ଛଅଟା ଢେଲା ପକାଇଲା । ବାଘ ତା ଛେଳି, ଛେଳିଛୁଆ ଓ ବୁଢ଼ୀମାଆଙ୍କୁ ଖାଇଥିଲା । ସେ

ଗୋଟିଏ ଢେଲା ପକାଏ; ଏଣେ ମୁହଁରେ କହେ 'ଖା ମୋ ଛେଳକୁ'। ଆଉ ଗୋଟାଏ ପକାଏ; କହେ ଖା ମୋ ବୁଢ଼ୀମାଆକୁ' । ଢେଲା ପକାଇ ପକାଇ ତା ହାତ ଯେତେବେଳେ ଖୋଲା ହେଲା, ସେତେବେଳେ ଯାଇ ସେ ଘରକୁ ଫେରିଲା ।



ଜଣେ ଶିକାରୀ ଲେଖିଛନ୍ତି—ଆମେ ପାଞ୍ଚ ଜଣ ବଣକୁ ଶିକାର କରିବାକୁ ଯାଇଥାଉଁ । ଅବଶ୍ୟ ବଡ଼ ବଡ଼ ଜନ୍ତୁ ଶିକାର କରିବାକୁ ଆମର ବଳ ନ ଥାଏ । ଆମ ପାଖରେ ଯେଉଁ ବନ୍ଧୁକ ଥାଏ, ସେଥିରେ କେବଳ ଚଢ଼େଇ ମରିହେବ । ଖୁବ୍ ଯୋର ବଣରେ ଗୋଟାଏ ବିଲୁଆ ବା ଗଧିଆ ମରିପାରନ୍ତି । ବାଘମାନଙ୍କ ଆଗରେ ତାହା କେବଳ ପିଲାଖେଳ ବନ୍ଧୁକ ।

ବଣଭିତରେ ସଫା ଜାଗା ଦେଖି ତମ୍ବୁ ପକାଇ ରହିଲୁ । ପାଖରେ ନଈଟିଏ ବହି ଯାଉଥାଏ । ଦୁଇ ଦିନ ପର୍ଯ୍ୟନ୍ତ ସେପରି କିଛି ଶିକାର ମିଳିଲେ ନାହିଁ । ତୃତୀୟ ଦିନ ମଧ୍ୟ ସମସ୍ତେ ବଣରେ ବହୁତ ବୁଲିଲୁ ; କିନ୍ତୁ କିଛି ପାଇଲୁ ନାହିଁ । ଉପରବେଳା ଚାରି ଜଣ ସାଙ୍ଗ ପୁଣି ବଣଭିତରକୁ ଗଲେ । ମୁଁ ଏକୁଟିଆ ତମ୍ବୁଭିତରେ ବସିଥାଏ ।

ନଈ ମଝିରେ ଛୋଟ ଛୋଟ ପଠା ଥାଏ । ସେଥିରେ କେବଳ ବେଣା, କୁଶ, ଘାସର ବୁଦା ଅଣ୍ଟାଏ ଯାଏ ବଢ଼ିଥାଏ ।

ଗୋଟିଏ ପଠାରେ ପଲେ ଚଢ଼େଇ ବସିଥିବାର ମୁଁ ଦେଖି-ପାରିଲି । ମନରେ ଭଲ ତରକାରି ହେବ—ଏହା ଭାବି ବନ୍ଧୁକଟି ଧରି ନଈକୂଳକୁ ବାହାରିଗଲି ।

ପଠା ବେଶି ଦୂର ନୁହେଁ । କୂଳକୁ ଯାଇ ବନ୍ଧୁକ ଫୁଟାଇଲି ।

ତିନି ଚାରୋଟି ଚଢ଼େଇ ଅଳ୍ପ ଉଡ଼ି ତଳେ ପଡ଼ିଗଲେ । ମୁଁ ଖୁସିରେ ବନ୍ଧୁକଟି ଗଛକୁ ଡେରି ରଖିଦେଲି । ପିନ୍ଧିଥିବା ଲୁଗା ଟେକି ପାଣିଭିତରକୁ ପଶିଗଲି । ପଠାରେ ପଡ଼ିଥିବା ଚଢ଼େଇଙ୍କୁ ଆଣିବାକୁ ମନ ଉଚ୍ଛନ୍ନ ହେଉଥାଏ ।

ସେତେବେଳକୁ ମୁହଁଅନ୍ଧାର ହୋଇଆସିଲାଣି; ତଥାପି ଖଣ୍ଡେଦୂରରୁ ସବୁ ଦେଖାଯାଉଥାଏ । ମୁଁ ପଠାରୁ ଖୋଜଖୋଜ ଚାରୋଟି ଚଢ଼େଇ ଆଣିଲି । ମନଖୁସିରେ ପୁଣି ପାଣିରେ ପଶି କୂଳକୁ ଆସିଲି ।

କୂଳ ଅଳ୍ପ ଦୂର ଅଛି, ପୁଣି ଖୁବ୍ ଚହଲାଲା ପରି ଦେଖାଗଲା । ପଛପଟେ ଚବ୍‌ଚବ୍ ଶବ୍ଦ ଶୁଭିଲା । ପଛକୁ ଚାହିଁ ଦେଏଁ ତ, ଗୋଟାଏ ମସ୍ତବଡ଼ ଘଡ଼ିଆଳ କୁମ୍ଭୀର । ମୋତେ ହିଁ ଲକ୍ଷ୍ୟ କରି ଖୁବ୍ ଯୋରରେ ଆସୁଛି ।

ଆଗରେ କୂଳ ଆଉ ପାଞ୍ଚ ଛ ହାତ ଦୂର ଅଛି, ପଛରେ ସେ ରହିଛି ପ୍ରାୟ ପନ୍ଦର ହାତ ଦୂରରେ । ମୁଁ ପ୍ରାଣବିକଳରେ ତରତର ହୋଇ ଆଗକୁ ଚାଲିଲି । ପାଣିଭିତରେ ପାଦ ଠିକ୍ ପଡ଼ୁ ନ ଥାଏ । ତଳେ କେଉଁଠି ଖାଲ ଥିବ, ସେ ଭୟ ମଧ୍ୟ ମନରେ ଥାଏ ।

ମୁଁ ଠିକ୍ ଶୁଖିଲାରେ ଡାହାଣ ପାଦ ପକାଇଲା ବେଳକୁ ପଛରେ ଆସି କୁମ୍ଭୀର ଲାଗିଗଲାଣି—ମୋର ବାଁ ପାଦକୁ ଠିକ୍ ଧରିବା ଉପରେ ।

ମାଟିରେ ପାଦ ପଡ଼ିବାରୁ ମୋର ସାହସ ବଢ଼ିଗଲା, ତରବର ହୋଇ ପାଦ ପାଣିରୁ ଉଠାଇ ଉପରକୁ ଚାଲିଆସିଲି । ଦଶ ପନ୍ଦର ଖୋଜ ଦଉଡ଼ିଗଲି । କୁମ୍ଭୀର ବି ମୋ ପଛେପଛେ କଚ୍ଛା ବାଟ ଉପରକୁ ଉଠିଆସିଲା ।

ଗଛମୂଳରୁ ବନ୍ଧୁକଟା ହାତରେ ଧରିବାକୁ ଯାଉଛି, ଦେଖିନେଲି, ଗୋଟାଏ ମହାବଳ ବାଘ । କେତେବେଳୁ ସେ ଯେପରି ମୋତେ ହିଁ ଲକ୍ଷ୍ୟ କରି ବସି ରହିଛି ଚୁପ୍ ହୋଇ । କିଛି ଦୂରରେ ଥିଲେ ସେ ସାଙ୍ଗେସାଙ୍ଗେ ମୋ ଉପରକୁ କୁଦି ପଡ଼ିଥାଆନ୍ତା । କିନ୍ତୁ ମୁଁ ଓଲଟି ତା ଆଡ଼କୁ ଦଉଡ଼ ଦଉଡ଼ ଆସି ତା ମୁହଁପାଖରେ—ଦୁଇ ତିନି ହାତ ର ଫରକ ନାହିଁ । ବୋଧହୁଏ ବାଘଟା ଏତେ ଦୂର ଆଶା କରି ନ ଥିଲା ।

ପାଖରେ ଗୋଟିଏ ଶାଳଗଛ ଥିଲା । ଏପରି ବିପଦରେ ମୋ ମୁଣ୍ଡରେ ବୁଦ୍ଧି ଖେଳିଗଲା । ମୁଁ ସାଙ୍ଗେସାଙ୍ଗେ ଗଛ ଉପରକୁ ଉଠିଗଲି । ବୋଧହୁଏ ବାଘମାମୁର ଏତେବେଳେ ସରିକ ହୋସ୍ ହେଲା ଯେ, ପାଟିରୁ ଖାଇବା ଜିନିଷ ଖସିଗଲା । ସେ ଗୋଟାଏ ଗର୍ଜନ କରି ଉଠି ଝାଙ୍କୁଡ଼ୁ ହୋଇପଡ଼ିଲା । ଗଛମୂଳକୁ ଆସି ମୋତେ ହିଁ ଚାହିଁ ବସି ରହିଲା ।

ସାଙ୍ଗେସାଙ୍ଗେ ଅବଶ୍ୟ ବିପଦରୁ ରକ୍ଷା ମିଳିଗଲା; କିନ୍ତୁ ଏହା ପରେ କଅଣ ହେବ—ମୁଁ ଭାବିପାରୁ ନ ଥାଏ । ଗଛ ଡାଳରେ ମୁଁ, ଗଛ ମୂଳରେ ବାଘ । ସେ ମୋତେ ହିଁ ଏକଧ୍ୟାନରେ ଚାହିଁ ରହିଛି । ଜିଭ ବୁଲାଇ ମୁହଁଯାକ ଚାଟି ପକାଉଛି । ପାଞ୍ଚ ହାତ ଦୂରରେ ନଈ କୂଳରେ କୁମ୍ଭୀର । ତା ମୁହଁ ପାଖ ଶୁଖିଲାରେ, ଲାଞ୍ଜଆଡ଼ ଅଧିକ ପାଣିଭିତରେ । ଆଉ ପାଖଆଖରେ ସାହାପକ୍ଷ କେହି ନାହାନ୍ତି ।

ଗଛଉପରେ ବସି ତଳେ ଥିବା ଦୁଇଟି ସାକ୍ଷାତ ଯମଙ୍କୁ ଥରେ ଲେଖାଏଁ ଚାହିଁ ନେଲି । ତା ପରେ ଲଙ୍ଗଳା ହୋଇପଡ଼ିଲି; ଦେହରୁ ଜାମା ବି କାଢ଼ିପକାଇଲି । ଓଦା ଲୁଗାରେ ଜାମାକୁ ବାନ୍ଧି କୁମ୍ଭୀର ଆଗକୁ ପାଣିକୁ ଫିଙ୍ଗିଦେଲି ।

ପାଣିରେ ଲୁଗା ପଡ଼ ଶବ୍ଦ ହେବା ସାଙ୍ଗେ ସାଙ୍ଗେ ବାଘ ପାଣିକୁ କୁଦିପଡ଼ିଲା । ଏଣେ କୁମ୍ଭୀର ବି ଶିକାର ଭାବି ଧଡ଼ାସ୍ କରି ଲେଉଟି ପଡ଼ିଲା । ବାଘ ପାଟିରେ ଲୁଗାପୁଡ଼ା, କୁମ୍ଭୀର ପାଟିରେ ବାଘର ଗୋଟାଏ ଗୋଡ଼ ।

କୁମ୍ଭୀର ବାଘକୁ ଟାଣୁଥାଏ ପାଣିଭିତରକୁ, ବାଘ କୁମ୍ଭୀରକୁ ମାଟିଉପରକୁ ଘୋଷାରୁଥାଏ । ବାଘ କୁମ୍ଭୀର ମୁହଁରେ କାମୁଡ଼ାଟାଏ ଦେଲାବେଳକୁ, କୁମ୍ଭୀରର ଲାଞ୍ଜପାହାର ଝିବ୍ ଜୋରରେ ତା ପିଠିରେ ବସୁଥାଏ ।

ଗଛଉପରେ ବସି ଏ ବିପଦରେ ମଧ୍ୟ ମୁଁ ନ ହସି ରହି ପାରିଲି ନାହିଁ । ବାଘ କୁମ୍ଭୀରଙ୍କ ଯୁଦ୍ଧ କ୍ରମେ ପ୍ରବଳ ହୋଇ ଉଠିଲା । ଦୁହିଙ୍କ ଗର୍ଜନରେ ସେ ଜାଗା କମ୍ପିଗଲା । ନଈର ପାଣି ଦୁଇଭାଗ ହୋଇଗଲା ପରି ଦେଖାଯାଉଥାଏ ।

କିଛି ସମୟ ଲଢ଼େଇପରେ ସେ ଦୁହେଁ ସେଠାରେ ମରି ଶୋଇଲେ ।

—୭—

ବାଘକୁ ସମସ୍ତେ ଡରନ୍ତି । ବାଘକୁ ଦୂରରୁ ଦେଖିଲେ କି ବାଘ ଗର୍ଜନ ଶୁଣିଲେ, କିଏ ଯାଇ କୁଆଡ଼େ ଲୁଚନ୍ତି । କିନ୍ତୁ ବାଘ ସାପକୁ ଭାରି ଡରେ । ସାପ ଦେଖିଲେ ସେ ମୁଲକ ଛାଡ଼ି ବାଘ ପଳାଇଯାଏ । ଅକସ୍ମାତ୍ ଯଦି କୌଣସି ସାପ ସାଙ୍ଗରେ ତାର କେତେବେଳେ ଯୁଦ୍ଧ ଲାଗିଯାଏ, ତେବେ ବାଘ ତାକୁ ପାରେ ନାହିଁ । ଅବଶ୍ୟ ନାଗ, ଧଣ୍ଡ ଆଦିଙ୍କୁ ସେ ଖାତିର୍ କରେ ନାହିଁ । ବଣଭିତରେ ଥିବା ଅଜଗର, ଅହିରାଜ ପ୍ରଭୃତି ବଡ଼ ବଡ଼ ସାପ ସହିତ ଥରେଥରେ ବାଘର ଯୁଦ୍ଧ ଲାଗି ଯାଇ ଥାଏ । ସେ ଦିନ କଣ ଥରଉଠେ ।

ଥରେ ଦଳେ ଲୋକ ଜଙ୍ଗଲରୁ କାଠ ଆଣୁଥିଲେ । ବଡ଼ ବଡ଼ କାଠଗଡ଼ ସବୁ ଭେଳା କରି ବାନ୍ଧଥାଆନ୍ତି । ନଈ ପାଣିରେ ସେ ଭେଳା ଭସାଇ ସହରକୁ ଆଣନ୍ତି । ଡଙ୍ଗାଉପରେ ବସି ଆହୁଲା ମାରିଲା ପରି ଭେଳା ଉପରେ ରହି ଆହୁଲା ପକାନ୍ତି । ସେହି ଆହୁଲା ଯୋଗେ ଭେଳା ଭାସି ଭାସି ଆସେ ।

ଲୋକେ ଭେଳା ବାନ୍ଧିଲେ । ଖରା କାକରରୁ ରକ୍ଷା ପାଇବା ପାଇଁ ତା ଉପରେ ଗୋଟିଏ ଛୋଟିଆ କୁଡ଼ିଆ କଲେ; ମାତ୍ର କଅଣ ଅସୁବିଧା ହେବାରୁ ସାଙ୍ଗେସାଙ୍ଗେ ଭେଳା ଛାଡ଼ିଲେ ନାହିଁ, ଦୁଇ ଦିନ ସେଠାରେ ଅପେକ୍ଷା କଲେ ।

ବଡ଼ ଗରମ ହେଉଥାଏ, ତେଣୁ ସମସ୍ତେ ଭେଳା ଉପରେ ପଦାରେ ରହୁଥାନ୍ତି । ସେ କୁଡ଼ିଆ ଭିତରକୁ ଯିବା ଦରକାର ପଡ଼ୁ ନ ଥାଏ । କପରି ଗୋଟିଏ ବଡ଼ ଅଜଗର ସାପ ଆସି ରାତିରେ ସେ କୁଡ଼ିଆ ଭିତରେ ଆଶ୍ରୟ ନେଇଛି, ଲୋକେ ତାହା ମୋଟେ ଜାଣି ନ ଥାନ୍ତି ।

ସୁବିଧା ବେଳ ଦେଖି ସମସ୍ତେ ଆହୁଲା ପକାଇଲେ; ଭେଳା ଚାଲିଲା । ଲୋକେ ମନ ଖୁସିରେ ଗୀତଗାଇ ହସି ଗପ ଛାଡ଼ି ଦେଉଥାନ୍ତି ।

ଚାରି ପାଞ୍ଚ ମାଇଲ ବାଟ ଆସିଲା ପରେ ସୂର୍ଯ୍ୟ ପଶ୍ଚିମ ଦିଗରେ ବୁଡ଼ିଗଲେ । ଚାରିଆଡ଼ ଅନ୍ଧାର ହୋଇଆସିଲା । ବଣ ଭିତରୁ ବାଘ ଗର୍ଜନ ଶୁଣାଗଲା । ଲୋକଙ୍କ ମନରେ ଟିକିଏ ଭୟ ହେଲା, ମାତ୍ର ନଈ ମଝିରେ ଥିବାରୁ ସେପରି କିଛି ଚିନ୍ତିଆ ହୋଇ ପଡ଼ିଲେ ନାହିଁ ।

ପ୍ରଥମେ ବାଁ ପାଖରୁ ଗର୍ଜନ ଶୁଭିଲା । ଲୋକମାନେ ଠିକ୍ କଲେ ଯେ, ଡାହାଣ ପାଖ କୂଳକୁ ଲଗାଇ ଭେଳା ଚଳାଇବେ ।

ତା ହେଲେ ବାଁ ପାଖ କୂଳ ବେଶି ଦୂର ରହିଯିବ । ବାଘ ଆସିଲେ ଏତେ ବାଟ ପାଣିରେ ପହଁରି ତାଙ୍କ ପାଖକୁ ଆସିପାରିବ ନାହିଁ । ସେମାନେ ଡାହାଣ କୂଳକୁ ଭେଳା ନେଇ ଆସିଲେ ।

ହଠାତ୍ ଡାହାଣ ପାଖ କୂଳରେ ଦୁଇଟା ଆଲୁଅ ଝକ୍‌ଝକ୍ କଲାପରି ଦେଖାଗଲା । ସେ ଆଲୁଅ ଦୁଇଟା ସତେ ଯେପରି ତାଙ୍କରି ଆଡ଼କୁ ଖୁବ୍ ଜୋରରେ ଆସୁଛି । ମୁହୂର୍ତ୍ତକ ପରେ ଦେଖାଗଲା କୂଳରେ ଗୋଟାଏ ମହାବଳ ବାଘ । ତାର ଆଖି ଦୁଇଟା ଆଲୁଅ ପରି ଜଳୁଛି ।

ଗୃହ୍ନି ଗୃହ୍ନି ବାଘ ଗୋଟାଏ ଗର୍ଜନ କରି ଡ଼ କୁଦା ମାରିଲା । କୂଳଠାରୁ ଛ ସାତ ହାତ ଦୂରରେ ଭେଳା ଥାଏ । ଏକା କୁଦାକେ ବାଘ ଆସି ଭେଳାଉପରେ । ଭେଳାରେ ଥିବା ଲୋକଙ୍କ ଆଖି ବୁଜି ହୋଇଗଲା ।

ଦଇବଯୋଗକୁ ବାଘ କୌଣସି ମଣିଷ ଉପରେ ପଡ଼ିଲା ନାହିଁ; ପଡ଼ିଲା ଯାଇ ସେ କୁଡ଼ିଆ ଉପରେ । ତା ଧକ୍କା ଖାଇ କୁଡ଼ିଆଟି ଭାଙ୍ଗି ଚୂନା ହୋଇଗଲା ।

ଫଁ ଫଁ ଗର୍ଜନ ଶୁଣି ଲୋକେ ସେ ଆଡ଼କୁ ଚାହିଁଲେ ; ଦେଖିଲେ, ଗୋଟାଏ ମସ୍ତବଡ଼ ଅଜଗର ସାପ ବଡ଼ ଫଣା ଟେକି ବାଘକୁ ଚାହିଁ ରହିଛି । ବାଘର ଗୋଟିଏ ପାଦ ତା ପିଠିଉପରେ ।

ଭେଳାଉପରେ ଦୁଇଟା ସାକ୍ଷାତ ଯମ—ଗୋଟାଏ ମସ୍ତବଡ଼ ଅଜଗର ଓ ଗୋଟାଏ ମହାବଳ ବାଘ । ଜୀବନକୁ ପାଣି ଛଡ଼ାଇ ସମସ୍ତେ ପାଣିକୁ ଡେଇଁପଡ଼ିବାକୁ ବାହାରିଲେ । ମାତ୍ର ମୁହୂର୍ତ୍ତକ ମଧ୍ୟରେ ବାଘ ଓ ସାପ ମଧ୍ୟରେ ଲଢ଼େଇ ଲାଗିଯିବାରୁ ଖଣ୍ଡେ ଦୂରରେ ଠିଆ ହୋଇ ଚାହିଁ ରହିଲେ ।

ସାପ ସ୍ୱରରେ ଗୋଟାଏ ଗ୍ୱେଟ ବାଘ ମୁହଁକୁ ମାଗଲା । ବାଘ ତା ଫଣାଟାକୁ ପାଟିରେ କାମୁଡ଼ି ଧରି ପକାଇଲା । ସାପ ନିଜ ଲାଙ୍ଗୁଡ଼କୁ ଦୁଇ ତିନି ଥର ତଳେ ପିଟି ଏପରି ବୁଲାଇ ଆଣିଲା ଯେ, ବାଘ ଦେହରେ ତିନି ପ୍ରସ୍ଥ ଗୁଡ଼ାଇ ହୋଇଗଲା । ସାପ ଲାଙ୍ଗୁଡ଼କୁ ଚିପିଦେବା ସାଙ୍ଗେସାଙ୍ଗେ ବାଘ ଆଉ ଠିଆ ହୋଇ ରହିପାରିଲା ନାହିଁ; ଦଡ଼ଭୁମ୍‌କରି ଭେଳା ଉପରେ ପଡ଼ିଗଲା । ଦୁହେଁଯାକ ଥରେ ଦୁଇଥର ଗଡ଼ାପଡ଼ା ହେଲେ । ବାଘ ସାପର ବନ୍ଧନ ଫିଟାଇବାକୁ ଖୁବ୍ ଟଣା ଓଟରା କରୁଥାଏ, ତେଣେ ସାପ ସେତିକି ଯୋରରେ ଭିଡ଼ି ହେଉଥାଏ ।

ଗଡ଼ାଗଡ଼ି ହୋଇ ଦୁହେଁଯାକ ପାଣିଭିତରେ ପଡ଼ିଗଲେ । ପାଣିରେ ପୁରୁଷେ ଉଚ୍ଚର ଲହଡ଼ୀ ଉଠିଲା । ଭେଳା ହାଲୁକା ହୋଇଗଲା । ଲୋକମାନେ ପାରୁପର୍ଯ୍ୟନ୍ତ ଆହୁଲା ପକାଇ ଭେଳା ଚଳାଇଲେ । ଆଉ ମୁହୂର୍ତ୍ତେ ସେଠାରେ ରହିଲେ ନାହିଁ ।

—୨—

ଆଗେ ଦେଶରେ ରେଲଗାଡ଼ି ଚାଲୁ ନ ଥିଲା । ଲୋକେ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଘୋଡ଼ା, ନ ହେଲେ ବଳଦଗାଡ଼ିରେ ଯା ଆସ କରୁଥିଲେ ।

ବ୍ରହ୍ମଦେଶର ରାଜଧାନୀ ରେଙ୍ଗୁନ । ସେଠାରେ ଉଶ ବୋଲି ଜଣେ ବେପାରୀ ଥିଲେ । ତାଙ୍କର କାରବାର ବେଶି ମାଣ୍ଡାଲେରେ ହୁଏ । ରେଙ୍ଗୁନରୁ ମାଣ୍ଡାଲେ ବହୁତ ଦୂର । ବାଟରେ ବଡ଼ ବଣ ଜଙ୍ଗଲ ପଡ଼େ । ଉଶ ଥରେ ମାଣ୍ଡାଲେ ଗଲାବେଳେ ବାଘ ହାବୁଡ଼ରେ ପଡ଼ିଥିଲେ । ସେ ବାଘମୁହଁରୁ କପରି ରକ୍ଷା ପାଇଥିଲେ, ତାହା ନିଜେ ବର୍ଣ୍ଣନା କରିଅଛନ୍ତି ।

ସେ ଲେଖିଛନ୍ତି—ମୁଁ ଖବର ପାଇଲି ଯେ, ଶୀଘ୍ର ମାଣ୍ଡାଲେ ନ ଗଲେ ମୋର ବହୁତ କ୍ଷତି ହୋଇଯିବ । ଆଉ ସାଙ୍ଗସାଥୀ ଖୋଜିବାକୁ ମୋତେ ସମୟ ନ ଥିଲା । ଆମ ସହରର କେତେକ ଲୋକ ଗୁଡ଼ାଏ ଘୋଡ଼ା ରଖିଥାଆନ୍ତି । ସେହି ଘୋଡ଼ାକୁ ଭଡ଼ା ଲଗାନ୍ତି । ମୁଁ ଗୋଟିଗୋଟି ହୋଇ ବହୁତ ଘୋଡ଼ାମାଲିକଙ୍କ ପାଖକୁ ଗଲି । ମାତ୍ର ସମସ୍ତଙ୍କ ଘୋଡ଼ା ଭଡ଼ା ଲାଗିଯାଇ ଥାଆନ୍ତି । ଶେଷରେ ଜଣେ ଲୋକ କହିଲା—ମୋର ଗୋଟିଏ ଘୋଡ଼ା ଅଛି, ମାତ୍ର ମୁଁ ତାକୁ ଦେବି ନାହିଁ; କାରଣ ସେ ବଡ଼ ଦୁଷ୍ଟ ।

ମୋର ତ ନିତାନ୍ତ ଘୋଡ଼ା ଦରକାର । ମୁଁ ସେହି ଘୋଡ଼ାକୁ ନେବାକୁ ଜିଦ୍ ଲଗାଇଲି । ଯାହା ଭଡ଼ା ଦିଆଯାଏ, ତାର ଦେଢ଼ଗୁଣ ଗଣିଦେଲି । ଲୋକଟି ବାଧ୍ୟ ହୋଇ ଘୋଡ଼ା ମୋତେ ଦେଲା ।

ମୁଁ ଘୋଡ଼ା ଚଢ଼ିବାରେ ବେଶ୍ ଦକ୍ଷ । ଘୋଡ଼ାପିଠିରେ ବସିଗଲାକ୍ଷଣି ସେ ବହୁତ ଡେଇଁଲା । ପଛର ଦୁଇ ଗୋଡ଼ ଟେକି ମୋତେ ପକାଇଦେବାକୁ ଚେଷ୍ଟା କଲା; ମାତ୍ର ମୁଁ ଦୃଢ଼ ହୋଇ ବସିଥାଏଁ । ଖୁବ୍ ଜୋରରେ ଚାବୁକ ମାରୁଥାଏଁ । କିଛି ସମୟ ଡିଆଁଡେଇଁ କଲା ପରେ ଘୋଡ଼ା ବୁଝିଗଲା ଯେ, ସେ ଯେପରି ଦୁଷ୍ଟ, ତାକୁ ସୁଆର ମିଳିଛି ସେହିପରି ପାଜି । ଅନ୍ୟ ଉପାୟ ନ ପାଇ ସେ ବାଟ ଚାଲିଲା ।

ଗୋଟିଏ ବଣଭିତରେ ରାତି ହେଲା । ଘାଟି ଜାଗା ଆଉ ଚାରି ମାଇଲ ଦୂରରେ । ସେଇତକ ବାଟ ଗଲେ ରାତିକି ସେଠାରେ ବିଶ୍ରାମ ନେବି—ଏହା ଭାବି ମୁଁ ଘୋଡ଼ା ପିଠିରେ ଜୋରରେ ଚାବୁକ ମାରିଲି । କିନ୍ତୁ ଘୋଡ଼ା ଖୋଜେ ହେଲେ ଆଉ ଆଗକୁ ଗୋଡ଼ ପକାଇଲା ନାହିଁ । ବଣମଝିରେ ପଥର ପରି ଠିଆ ହୋଇ ପଡ଼ିଲା ।

ଏହି ସମୟରେ ଅଳ୍ପ ଦୂରରେ ବାଘ ଗର୍ଜନ ଶୁଣାଗଲା । ମୋର ହାଲୁକ ଶୁଖିଗଲା । ମୁଁ ଧାରଣା କରିନେଲି ଯେ, ଆଜି ଏହିଠାରେହିଁ ବାଘ ମୁହଁରେ ମରିବି । ପାଖରେ କେହି ନାହାନ୍ତି, ଘୋଡ଼ା ବି ପାଦେ ଚାଲୁ ନାହିଁ । ଏପରି ଅବସ୍ଥାରେ ଉପାୟ କଅଣ ?

ବାଘ ଗର୍ଜନ ଶୁଣିବାକ୍ଷଣି ଘୋଡ଼ା ଜୋରରେ ଦଉଡ଼ିଲା । ସେ ଯଦି ଠିକ୍ ବାଟରେ ଯାଇଥାନ୍ତା, ତେବେ ଅଳ୍ପ ସମୟ ମଧ୍ୟରେ ବଣ ଟପି ମୁଁ ଘାଟିରେ ପହଞ୍ଚିଥାନ୍ତି । ମାତ୍ର ଘୋଡ଼ା ନବୋଝି ବଣଭିତରକୁ ଧପାଇଥାଏ । ଚାରିଆଡ଼େ ଗଛଲତା ଛନ୍ଦାଛନ୍ଦି; ତଳେ କଣ୍ଟାବୁଦା ।

ବାଘ ଗର୍ଜନ କ୍ରମେ ନିକଟରେ ଶୁଣାଗଲା । ମୁଁ ପଛକୁ ଚାହିଁ ଦେଖିଲି; ଘୋଡ଼ା ପଛେପଛେ ବାଘ ଧାଇଁଛି । ମୁଁ ମୋ ଜୀବନକୁ ପାଣି ଛଡ଼େଇଦେଲି ।

ସେତିକିବେଳେ ଗୋଟାଏ ଗଛର ଡାଳ ମୋ ମୁଣ୍ଡରେ ବାଜିଲା । ହଠାତ୍ ମୋତେ ଗୋଟାଏ ବୁଦ୍ଧି ଦେଖାଗଲା । ମୁଁ ସେ ଡାଳଟାକୁ ଧରି ଓହ୍ଲାଇପଡ଼ିଲି । ଘୋଡ଼ା ବିନା ସଓ୍ୱାରରେ ଦଉଡ଼ି ଚାଲିଗଲା ।

ମାତ୍ର ଦଶ ପନ୍ଦର ହାତ ଯାଇଛି କି ନାହିଁ, ବାଘ ଗୋଟାଏ କୁଦାରେ ତା ପିଠିଉପରେ ବସିପଡ଼ିଲା । ମୁଁ ଯଦି ସେହି ମୁହୂର୍ତ୍ତରେ ତା ପିଠିରୁ ଖସିଯାଇ ନ ଥାନ୍ତି, ତେବେ ବାଘ ମୋରି ଉପରେ ହିଁ ପଡ଼ିଥାନ୍ତା । ଯାହା ହେଉ, ଠାକୁରେ ମୋତେ ରକ୍ଷା କରିଦେଲେ ।

ଘୋଡ଼ା ବୋଧହୁଏ ଭାବିଥିବ, ତା ପିଠିରେ ଆଗର ସେହି ସଓ୍ୱାର ବସିଛି । କିନ୍ତୁ ଯେତେବେଳେ ବାଘ ତା ବେକରେ

ମୁହଆଁ ଦାନ୍ତ ଗଳାଇଦେଲା, ସେତେବେଳେ ସେ ମନେ କରିଥିବ ଯେ, ଏ ତ ମହା ବିଷମ କଥା; ଏ କି ପ୍ରକାରର ସଓ୍ୱାର ?

ଜୋରରେ ଘୋଡା ଆଉ ଦଶ ହାତର ଖୋଜ ଦଉଡ଼ିଗଲା । ତା ପରେ ବିକଳରେ ଘଁ ଗଁ ହୋଇ ସେଠାରେ ପଡ଼ିଗଲା । ବାଘ କଣ୍ଠୁ ସମସ୍ତ ତା ରକ୍ତ ପିଇଲା । ତା ପରେ ତାକୁ ପାଟିରେ କାମୁଡ଼ି ଧରି ବଣଭିତରକୁ ଚାଲିଗଲା ।




ଅନେକ ଦିନର କଥା । ଓଡ଼ିଶାର ଗୋଟିଏ ଗଡ଼ଜାତରେ ବାଘ ମାତିଥାଏ । ବହୁତ ଶିକାରୀ ବାଘ ମାରିବାକୁ ଗଲେ; ମାତ୍ର ବାଘଟା ଭାରି ଚାଲାକ । ଶିକାରୀ ତାକୁ ଆଖିଆଗରେ ଦେଖନ୍ତି; ଠିକ୍ ବନ୍ଧୁକ ଫୁଟିଲାବେଳକୁ ସେ କୁଆଡ଼େ ଅଦୃଶ୍ୟ ହୋଇଯାଏ । କେହି ତାକୁ ମାରିପାରିଲେ ନାହିଁ; କିନ୍ତୁ ପ୍ରତିଦିନ ସେ ମଣିଷ ମାରି ଆନନ୍ଦରେ ଖାଉଥାଏ ।

ଶେଷକୁ ରାଜ୍ୟର ଦେଓ୍ୱାନ ବାଘ ମାରିବାକୁ ବାହାରିଲେ । ତାଙ୍କର ଭାରି ଗର୍ବ ଯେ, ସେ ବଡ଼ ସାହସୀ । ହାବୁଡ଼ରେ ପଡ଼ିଲେ ଗୋଟାଏ କାହିଁକି, ଦଶଟା ବାଘ ବି ମାରିଦେଇ ପାରିବେ ।

ସେହି ସମୟରେ ଜଣେ ବୁଢ଼ା ଶିକାରୀ ବି ଆସି ଦେଓ୍ୱାନଙ୍କ ପାଖରେ ପହଞ୍ଚିଲେ । ସେ ସେହି ରାଜ୍ୟର ଗୋଟିଏ ଗାଁ ସର୍ଦ୍ଦାର । ସେ ଜୀବନରେ ବହୁତ ବାଘ ମାରିଛନ୍ତି । ତେଣୁ ତାଙ୍କୁ ସମସ୍ତେ ବାଦୁଆ ସର୍ଦ୍ଦାର ବୋଲି ଡାକନ୍ତି ।

ବାଦୁଆ ମୁହଁରେ ଲମ୍ବା ଦାଢ଼ି, ମୁଣ୍ଡରେ ଗୋଟାଏ ମସ୍ତବଡ଼ ପଗଡ଼ି । ଦେଓ୍ୱାନସାହେବ ସେ ପଗଡ଼ି ଦେଖିଲାକ୍ଷଣି

ତ ଆଗ ବୁଢ଼େ ହସି ପକାଇଲେ । ଥଟ୍ଟା କରି କହିଲେ—ଯାହାହେଉ, ବାଘ ମାର ନ ମାର, ତୁମ ପଗଡ଼ି ଦେଖିଲେ ବାଘ ଘୁନଆଁ ହୋଇଯିବ ।

ବାଘୁଆ ବୁଢ଼ା ଏ ଥଟ୍ଟା କଥା ବୁଝିପାରିଲାନି । ଅଳ୍ପ ହସି ଉତ୍ତର ଦେଲା—"ମୁଁ ଯେଉଁ ଦିନ ପ୍ରଥମ ବାଘ ମାରିଲି, ସେହି ଦିନ ବୁଢ଼ାରଜା ମୋତେ ଏହି ଶିରପା ଉପହାର ଦେଇଥିଲେ । ସେହି ଦିନୁ ଯେତେ ଥର ମୁଁ ଶିକାରକୁ ଯାଇଛି, ସବୁ ଥର ଏହି ଶିରପା ମୁଣ୍ଡରେ ବାନ୍ଧି ଯାଏଁ । ମୁଁ ମୋ ଜୀବନରେ ପନ୍ଦରଟା ମହାବଳ ବାଘ ମାରିଲିଣି, କୌଣସି ଥର ଏ ଶିରପାକୁ ଛାଡ଼ି ନାହିଁ ।"

ଯାହାହେଉ ଦେଓ୍ୱାନସାହେବ ହାତୀ ଉପରେ ବସି ଶିକାରକୁ ବାହାରିଲେ । ସାଙ୍ଗରେ ବୁଢ଼ା ବାଘୁଆ ଓ ଆଉ କେତେକ ଲୋକ ଥାଆନ୍ତି ।

ଦିନକ ପରେ ବାଘ ମାରୁଥିବା ଗାଁ ପାଖରେ ପହଞ୍ଚିଲେ । ପ୍ରଥମେ ସମସ୍ତେ ବଣଭିତରକୁ ବୁଲି ବାହାରିଲେ—ଆଗ ସବୁ ଜାଗା ପରୀକ୍ଷା କରିନେବେ, କେଉଁଠାରେ ମଞ୍ଚା ବନ୍ଧା ହେବ, କେଉଁଠି ବୁଢ଼ା ଜଗିବ, ଛେଳିକୁ କେଉଁ ଜାଗାରେ ବାନ୍ଧିବାକୁ ପଡ଼ିବ—ଏହା ସବୁ ଆଗରୁ ଠିକ୍ ହେବା ଦରକାର । ଦିନରୁ ମଞ୍ଚା ବନ୍ଧା ହୋଇଗଲେ, ରାତିରେ ତା ଉପରେ ବସି ବାଘକୁ ଛକିବାକୁ ହେବ ।

ଦେଓ୍ୱାନସାହେବ ହାତୀ ଉପରେ ବସିଅଛନ୍ତି । ବୁଢ଼ା ବାଘୁଆ ଓ ଆଉ ସବୁ ପାଖଲୋକେ ବୁଲିବୁଲି ଯାଉଛନ୍ତି । ବଣର କେତେକ ସ୍ଥାନ ବୁଲିଲେ; ମାତ୍ର କେଉଁଠି ମଞ୍ଚା ପାଇଁ ସୁବିଧା ଜାଗା ପାଇଲେ ନାହିଁ ।

ହଠାତ୍ ବାଘୁଆ ଠିଆ ହୋଇଗଲା । ସମସ୍ତେ ସାବଧାନ ହେବାକୁ ରମକାନ୍ତ ଭଳ କହିଲା, "ବାଘ ଏଇ ପାଖରେ କେଉଁଠି ଅଛି ।" ସମସ୍ତେ ଜନଜନ ହୋଇ ଗଛଆଡ଼ଲୁ ଗୁହିଁବାକୁ ଲାଗିଲେ ।

ଆଠ ଦଶ ହାତ ଦୂରରେ ବଣର ବୁଦା ଦୋହଲିଗଲା । ସମସ୍ତଙ୍କ ଆଖି ସେଠାରେ ପଡ଼ିଲା । ଦେଖାଗଲା, ବାଘଟା ନିଶ୍ଚିନ୍ତ ମନରେ ସେହିଠାରେ ଶୋଇରହିଛି । ସେ କେତେବେଳୁ ଏମାନଙ୍କୁ ଦେଖିସାରିଲାଣି । ଏମାନଙ୍କ ଗତିବିଧି ଜାଣିବାକୁ ମୁଣ୍ଡ ଟେକି ଗୁହିଁଛି ।

ଦେଓ୍ୱାନ ହାତୀ ଉପରୁ ବନ୍ଧୁକ ଲକ୍ଷ୍ୟ ନେଲେ । ଗୁଳି ଛିପିବାକୁ ଯାଉଛନ୍ତି, ବାଘ ଉଠି ମାରିଲା ଡିଆଁ । କ୍ଷଣକ ମଧ୍ୟରେ କୁଆଡ଼େ ଅଦୃଶ୍ୟ ହୋଇଗଲା । ପାଞ୍ଚ ସାତ ମିନଟ୍ ଯାଏ ଯେତେ ଖୋଜାଖୋଜି ହେଲା, ଆଉ ତାର ପତ୍ତା ମିଳିଲା ନାହିଁ ।

ଦେଓ୍ୱାନଙ୍କ ମନରେ ବୋଧହୁଏ ଟିକିଏ ଭୟ ହୋଇ ଯାଇଥିଲା । ସେହିଠାରୁ ଫେରି ଆସିବାକୁ ସେ ଲୋକଙ୍କୁ କହିଲେ; କିନ୍ତୁ ବାଘୁଆର ଫେରିବାକୁ ଇଚ୍ଛା ନ ଥାଏ ।

ଏହି ସମୟରେ ପଛଆଡ଼ୁ ଗୋଟାଏ ଗର୍ଜନ ଶୁଣାଗଲା । ମୁହୂର୍ତ୍ତକ ମଧ୍ୟରେ ବାଘ ପଛପଟୁ ଏପରି ଏକ କୁଦା ମାଇଲା ଯେ, ମାଇ ହାତୀ ପିଠି ଉପରେ । ଦେଓ୍ୱାନ ବାଘ ଧକ୍କା ଖାଇ ହେଉ ବା ପ୍ରାଣଭୟରେ ହେଉ ହାତୀ ପିଠିଉପରୁ ଗଡ଼ ଗଡ଼ ଆସି ତଳେ ପଡ଼ିଗଲେ ।

ହାତୀ ଜାଣିପାରିଲା ଯେ, ପିଠି ଉପରେ ବାଘ । ସେ ଥୋର-ଥାହାର ଉଠାଇ ପିଟିବାକୁ ଲାଗିଲା । ତା ବେକମୂଳ ଓ ଶୁଣ୍ଢ ବାଘ କାମୁଡ଼ାରେ ଦୁଇ ଗୁରିଜାଗା ଖଣ୍ଡିଆ ହୋଇଗଲା;

ରକତ ବନ୍ଧ ପଡ଼ୁଥାଏ । ତଥାପି ସେ ପିଠି ଉପରୁ ବାଘକୁ ପକାଇ ଦେବାକୁ ନାନା ଚେଷ୍ଟା କରୁଥାଏ ।

ବାଘ ଆଉ ଥପ୍ପ ହୋଇ ସେଠାରେ ରହିପାରିଲା ନାହିଁ । ତଳେ ପଡ଼ିଥିବା ଦେଓ୍ୱାନଙ୍କ ଉପରକୁ କୁଦିପଡ଼ିବାକୁ ବସିଲା । ଏହି ସମୟରେ ବାଘୁଆ ବାଘକୁ ଦେଖାଇ ବନ୍ଧୁକ ଟିପିଲା । ବାଘ ହଠାତ୍ ତା ଉପରକୁ କୁଦିପଡ଼ିଲା । ଗୁଳି ଲକ୍ଷ୍ୟ ଠିକ୍ ରହିଲା ନାହିଁ ।

ହାତୀ ପିଠିରୁ ଡେଇଁ ବାଘ ଆସି ପଡ଼ିଲା ବୁଢ଼ାଉପରେ । ତା ଧକ୍କାରେ ବୁଢ଼ା ତଳେ ପଡ଼ିଗଲା ।

ସେତେବେଳକୁ ଦେଓ୍ୱାନ ବହୁ କଷ୍ଟରେ ତଳୁ ଉଠି ଠିଆ ହେଲେଣି । ଲୋକମାନେ ଗଛ ଉହାଡ଼ରେ ଲୁଚି ଯାଇଥିଲେ, ସେମାନେ ଆସି ରୁଣ୍ଡ ହେଲେଣି । ସମସ୍ତେ ଦେଖିଲେ, ବାଘୁଆ ବୁଢ଼ା ତଳେ ପଡ଼ିଛି । ତା ଦେହ ଘାସବୁଦା ଭିତରେ ଥିବାରୁ ଦେଖାଯାଉ ନାହିଁ । ବାଘ ତା ଉପରେ ବସିଛି ।

ସମସ୍ତେ ଜାଣିଗଲେ ବୁଢ଼ା ବଚିବ ମଲା । ବନ୍ଧୁକ ମାରି ହେଉ ନାହିଁ, କାରଣ ବାଘକୁ ମାରୁ ମାରୁ ଯଦି ବୁଢ଼ା ଦେହରେ ବାଜେ ! ଆଉ ବନ୍ଧୁକ ଉଠାଇ ମାରିବାକୁ ସାହସ ବି କାହାରି ସେତେବେଳେ ନ ଥାଏ ।

ସମସ୍ତେ ଏକଧ୍ୟାନରେ ବାଘକୁ ଚାହିଁ ରହିଥାନ୍ତି । ମୁହୂର୍ତ୍ତକ ପରେ ବାଘୁଆ ବୁଢ଼ା ଉପରକୁ ଉଠି ଆସିଲା । ତା ମୁଣ୍ଡରେ ସେ ପଗଡ଼ି ନ ଥାଏ । ବାଘ ତଳେ ପଡ଼ି ଗର୍ଜନ ଛାଡ଼ୁଥାଏ, ବାଘୁଆ ଉପରେ ବସି ତାକୁ ମାଡ଼ ଚଢ଼ାଉଥାଏ ।

ଦେଓ୍ୱାନ ଜାଣିଲେ ଯେ, ବାଘର ଆଉ ଉଠିବାର କ୍ଷମତା ନାହିଁ । ସେ ବାଘର ପାଖକୁ ଆସିଲେ । ସେତେବେଳେ ବାଘ ତଳେ ପଡ଼ିଥାଏ, ତା ଆଗ ଗୋଡ଼ ଦୁଇଟା ବୁଢ଼ାର ଶିରପା ଦେହରେ

ଛନ୍ଦ ହୋଇ ଯାଇଥାଏ । ବେକରୁ ଅଧେ କାଟି ହୋଇ ଯାଇଥିବାରୁ ଝରଝର ରକ୍ତ ବହୁଥାଏ ।

ବାଘୂଆ ବୁଢ଼ା ବାଘକୁ ମାରିସାରି ଠିଆ ହୋଇ ଅଣ୍ଟା ସଳଖିଲା । ତା ପରେ ବାଘ ଗୋଡ଼ରୁ ନିଜ ଶିରପା ଛଡ଼ାଇ ବାହାର କଲା । ସାଙ୍ଗେସାଙ୍ଗେ ତାହାକୁ ଝାଡ଼ି ପୁଣି ମୁଣ୍ଡରେ ଗୁଡ଼ାଇଲା ।

ଦେଓ୍ୱାନଙ୍କ ଆଡ଼କୁ ଚାହିଁ କହିଲା—"ପଗଡ଼ିର କରାମତି ଦେଖିଲେ ତ । ବାଘ ହାଣ୍ଡି ପିଠିରୁ ଆପଣଙ୍କ ଉପରକୁ ଡେଇଁଥିଲା । ତାକୁ ଭୁଲାଇବା ପାଇଁ ମୁଁ ବନ୍ଧୁକ ମାଇଲି । ବାଘ ମୋ ଉପରକୁ ଡେଇଁପଡ଼ିଲା । ସେତେବେଳକୁ ମୁଁ ତଳେ ବସି ପଡ଼ିଥାଏଁ । ବାଘ ଆସି ମୋ ପଗଡ଼ି ଉପରେ ପଡ଼ିଲା । ତାର ଆଗ ଦୁଇ ଗୋଡ଼ର ନଖ ସେ ପଗଡ଼ିରେ ଏମିତି ଛନ୍ଦ ହୋଇଗଲା ଯେ, ବାଘ ବନ୍ଧନରେ ପଡ଼ିଗଲା । ଅନ୍ୟ ଉପାୟ ନ ଦେଖି ମୋତେ କାମୁଡ଼ିବାକୁ ମୁହଁ ବଢ଼ାଇଲା । ମୁଁ ଅଣ୍ଟାର ଛୁରୀଟା ବାହାର କରି ହାତରେ ଧରିଥିଲି । ଗୋଟାଏ ଭୂଷାରେ ତା ବେକରୁ ଅଧେ କଟିଗଲା । ସେ ଆଉ କାମୁଡ଼ିବ କଅଣ, ସେଇଠି ଦେହକୁ ଛାଡ଼ିଦେଲା । ମୁଁ ତାକୁ ତଳକୁ ଗଡ଼ାଇ ପକାଇଲି, ପ୍ରଥମେ ତା ପାଟିରେ ହାତ ପୂରାଇ ତା ଜିଭଟା କାଟିଦେଲି ।"

ଦେଓ୍ୱାନ ଯେଉଁ ପଗଡ଼ି ଦେଖି ଥଟ୍ଟା କରୁଥିଲେ, ତାର କରାମତି ଦେଖିଲେ; ଆଉ ଜାଣିପାରିଲେ ଯେ, ବାଘ ଶିକାର ତାଙ୍କ ହାତରେ ହେବ ନାହିଁ ।

ବାଘୂଆକୁ ସେ ପଚାଶ ଟଙ୍କା ବକ୍‌ଶିସ୍ ଦେଇଥିଲେ ।

—୯—

ସୁନ୍ଦରବନ ଭିତରେ ଜଣେ ଜଙ୍ଗଲ ଅଫିସର ରହୁଥାନ୍ତି । ଦିନେ ସେ ତାଙ୍କର ଜଣେ ବନ୍ଧୁଙ୍କ ଘରକୁ ଭୋଜି ଖାଇବାକୁ ଯାଇଥିଲେ । ସେଠାରେ ଭୋଜି ସରୁସରୁ ରାତି ହୋଇଗଲା ।

ଅଫିସର ଖାଇ ସାରି ଘରକୁ ଫେରିଲେ । ଅନ୍ଧାର ରାତି, ପୁଣି ବଣରେ ବାଘ ଭାଲୁଙ୍କ ଭୟ । ସେଇଥିପାଇଁ ରାତିଟା ସେଠାରେ ରହିଯିବାକୁ ସମସ୍ତେ ଲଗାଇଲେ । ମାତ୍ର ଅଫିସର କାହାରି କଥା ନ ମାନି ଘରକୁ ଚାଲିଆସିଲେ ।

ବଣରେ ଲୋକେ ବାଘ ମାରିବାପାଇଁ ଗୋଟାଏ ଗୋଟାଏ ଖାଲ ଖୋଳିଥାଆନ୍ତି । ତା ମୁହଁରେ ଡାଳପତ୍ର ଭଲରୂପେ ଘୋଡ଼ାଇ ଦେଇଥାଆନ୍ତି । ତଳେ ଛେଳି ବା ମେଣ୍ଢାଟିଏ ବାନ୍ଧି ଥାଆନ୍ତି । ବାଘ ସେ ଛେଳି ବା ମେଣ୍ଢା ଶବ୍ଦ ଶୁଣି ତାକୁ ଖାଇବାକୁ ଗଲାବେଳେ ଖାଲଭିତରେ ଗଳିପଡ଼େ ଆଉ ଉଠିପାରେ ନାହିଁ । ପର ଦିନ ଲୋକେ ଆସି ପିଟି ପିଟି ତାକୁ ମାରି ପକାନ୍ତି ।

ଅଫିସର ଶୀଘ୍ର ବାଟ ଚାଲୁ ଚାଲୁ ସେହିପରି ଏକ ଖାଲ ଭିତରେ ଗଳିପଡ଼ିଲେ । ମୁହୂର୍ତ୍ତକ ମଧ୍ୟରେ ଉଠି ଝାଡ଼ିଝୁଡ଼ି ହେଲେ; କିନ୍ତୁ ଉପରକୁ ଉଠିବାର ଉପାୟ ନାହିଁ । ରାତି ପାହିବା ଯାଏ ସେହିଠାରେ ବସି ରହିବେ ବୋଲି ଠିକ୍ କଲେ । ସମୟ କଟାଇବା ପାଇଁ ପକେଟରୁ ବର୍ମା ଚୁରୁଟ୍ ଓ ଡିଆସିଲି ବାହାର କରି ଗୋଟାଏ ଚୁରୁଟ ଲଗାଇଲେ ।

କିଛି ସମୟ ପରେ ଗୋଟାଏ ବଡ଼ ଶବ୍ଦ ଶୁଣାଗଲା । ସେ ମୁହଁ ବୁଲାଇ ଦେଖିଲେ, ତାଙ୍କ ପାଖରେ ଗୋଟାଏ ଖୁବ୍ ବଡ଼ ମହାବଳ ବାଘ । ଦୁହିଙ୍କ ଭିତରେ ଦୂରତ୍ୱ ମୋଟେ ଚାରି ହାତ ।

ସେତେବେଳେ ଅଫିସରଙ୍କ ମନ ଯାହା ହୋଇଥିବ, ତାହା ଠାକୁରେ ଜାଣନ୍ତି । କିନ୍ତୁ ବାଘଟା ବୋଧହୁଏ ଏପରି ଗୋଟାଏ ଶିକାର ପାଇ ଖୁବ୍ ଖୁସି ହୋଇଗଲା ।

ଅଫିସର ଚାହିଁ ଦେଖିଲେ, ବାଘ ତାଙ୍କ ଆଡ଼କୁ କୁଦିପଡ଼ିବା ଉଦ୍ଦେଶ୍ୟରେ ଅଛି; କିନ୍ତୁ ତାଙ୍କ ପାଟିକୁ ଏକ ଧ୍ୟାନରେ ଚାହିଁ

ରହିଛି । ସେ ଯେତେବେଳେ ଚୁରୁଟ ଟାଣିଦେଉଛନ୍ତି, ସେତେ-ବେଳେ ନଆ ଜକ୍ ଜକ୍ କରି ଉଠୁଛି, ଗାତ ଭିତରେ ଧୂଆଁ ଖେଳେଇ ହୋଇ ଯାଉଛି । ସେହି ସମୟରେ ବାଘ ଭୟରେ ଅଳ୍ପ ପଛକୁ ଘୁଞ୍ଚିଯାଉଛି ।

ସେ ସ୍ଥିର ହୋଇ ବସି କେବଳ ଚୁରୁଟ ଟାଣିବାରେ ଲାଗିଗଲେ । ପକେଟ ଦିଗଣ୍ଡ ଆଉ ଗୋଟାଏ ଚୁରୁଟ ବାହାର କଲେ । ବେଶି ଧୂଆଁ ହେବା ପାଇଁ ଦୁଇଟା ଯାକ ଏକାବେଳକେ ଟାଣିଲେ ।

ଧୂଆଁ ଦେଖି ବାଘ ପାଖକୁ ଆସିବାକୁ ସାହସ କରୁ ନ ଥାଏ ।

ଗୋଟି ଗୋଟି କରି ପାଞ୍ଚଟି ଚୁରୁଟ ସେ ଲଗାଇଲେ । ଧୂଆଁରେ ସେ ଖାଲଟା ଆଚ୍ଛନ୍ନ ହୋଇଗଲାଣି ।

ଅଫିସର ପକେଟରେ ହାତ ମାରି ଦେଖିଲେ, ଆଉ ମାତ୍ର ଗୋଟିଏ ଚୁରୁଟ ରହିଛି । ଏଣେ ରାତି ମଧ୍ୟ ପାହିଆସିଲାଣି । ଚୁରୁଟ ଖାଇଖାଇ ତାଙ୍କ ମୁଣ୍ଡ ଧରି ଯାଇଥିଲା । କେତେବେଳେ ଯେ ସେ ଅଚେତ ହୋଇ ପଡ଼ିଛନ୍ତି, ତାହା ଆଉ ଜାଣନ୍ତି ନାହିଁ ।

ଡାକ୍ତରଖାନାରେ ତାଙ୍କର ଚେତା ହେଲା । ସେତେବେଳେ ତାଙ୍କ ବନ୍ଧୁ ସେଠାରେ ଥିଲେ । ସେ କହିଲେ, "କେତେକ ଲୋକ ଆସି ମୋତେ ଖବର ଦେଲେ ଯେ, ଖାଲଭିତରେ ବାଘ ପଡ଼ିଛି । ମୁଁ ଖାଙ୍ଗେଖାଙ୍ଗେ ଯାଇ ଗୁଳି କରି ବାଘକୁ ମାରିଦେଲି । ଭିତରେ ପଶି ବାଘକୁ ଉଠାଇଲାବେଳେ ଦେଖାଗଲା ଯେ, ସେଥିରେ ତୁମେ ମଧ୍ୟ ଅଚେତ ହୋଇ ପଡ଼ିରହିଛ । ମୁଁ ଭାବିଥିଲି, ତୁମେ ନିଶ୍ଚୟ ମରିଯାଇଥିବ । କିନ୍ତୁ ଡାକ୍ତର ସେବା ଶୁଶ୍ରୂଷା କରିବାରୁ ତୁମର ଏବେ ଚେତା ହେଲା ।"

